

# ଆଜ କବିତା

ନିତ୍ୟାନନ୍ଦ ଶତପଥୀ
ପ୍ରତିଭା ଶତପଥୀ

# ଆମ୍ଭ କବିତା

ଅଗ୍ନିଶିଖା

ନିତ୍ୟାନନ୍ଦ ଶତପଥୀ

ଶେଷଜନ୍ମ

ପ୍ରତିଭା ଶତପଥୀ

ପ୍ରଥମ ପ୍ରକାଶ
ଜୁନ୍ ୧୯୭୨

ପ୍ରଚ୍ଛଦ ଶିଳ୍ପୀ
ଶ୍ରୀ ଉଦୟନାରାୟଣ ଜେନା

ପ୍ରଚ୍ଛଦ ମୁଦ୍ରଣ
ଓଗର ପ୍ରେସ

ପ୍ରକାଶକ
ଶ୍ରୀ ଅନ୍ତର୍ଯ୍ୟାମୀ ଆଗୃର୍ଯ୍ୟ, ସାହିତ୍ୟାଗୃର୍ଯ୍ୟ
ମଣିଚରଣ ସାରଳା ଏକାଡ଼େମୀ
ପୋ: ଡଙ୍କୌଲ
ଜି: କଟକ

ମୁଦ୍ରାକର
ଶ୍ରୀ କେଶବ ଚରଣ ରଥ
ପ୍ରକାଶ ପ୍ରିଣ୍ଟର୍ସ
ପୀଠାପୁର, କଟକ—୧

ପ୍ରାପ୍ତିସ୍ଥାନ
କଟକର ବଡ଼ ବଡ଼ ବହିଦୋକାନ

ମୂଲ୍ୟ—ଦୁଇଟଙ୍କା

## ପ୍ରାକ୍ କଥନୀ

ଗୋଟିଏ ବୃକ୍ଷ, ଗୋଟିଏ ଲତା; କହୁଛନ୍ତି ଦୁଇଟି ଲେଖନୀରେ ଗୋଟିଏ ମନର କଥା । ଗୋଟିଏ ମଧୁଚକ୍ର ଗଢ଼ିଛନ୍ତି ଦୁଇଟି ମହୁମାଛି, ବହୁ ବନ ବା ମନ ଫୁଲର ସ୍ତରେ ସ୍ତରେ ବୁଲି । ତଥାପି ତା ମଧ୍ୟରେ ଦୁଇଟି ଆକାଶର ସନ୍ଧାନ ମିଳେ; ଜ୍ୟୋତ୍ସ୍ନା ବା ଉଷାର; ଦୁଇଟି ଋତୁର ଆଭାସ ମିଳେ—ଶରତ ବା ବସନ୍ତର । ଫୁଟିବାବେଳେ ଦୁଇଟି ମଞ୍ଜରୀ, ବର୍ଣ୍ଣ, ରସ ଓ ସୁରଭିରେ ଉଭୟର ସ୍ୱାତନ୍ତ୍ର୍ୟ ବାରି ହୁଏ । ଅଧିକନ୍ତୁ ଫୁଟିବାବେଳେ ଉଭୟର ବୃନ୍ତ, ଏହା ଗୋଟିଏ ଏକ, ଅଦ୍ୱୈତ ପ୍ରୀତିର । ଜୀବନ ଆଉ କାବ୍ୟ ମିଳିତ ହୋଇଛନ୍ତି ଗୋଟିଏ ବିନ୍ଦୁରେ—କବି ଜୀବନରୁ ସାଂସାରିକ ଜୀବନ, ସ୍ୱପ୍ନର ବାସ୍ତବ ଦିଗକୁ ଗତି, ବାସ୍ତବର ଖର ରଶ୍ମିରେ ସ୍ୱପ୍ନ ମଳିନ ହେବ ନାହିଁ—ବିଶ୍ୱାସ ।

ବିଷୟବସ୍ତୁ ଜୀବନର ବିସ୍ତୀର୍ଣ୍ଣ କ୍ଷେତ୍ରରୁ ଆହୃତ । କବିତା-ଗୁଡ଼ିକର ଫୁଟନ୍ତା କହ୍ଲାରର ପ୍ରଫୁଲ୍ଲତା ଓ ମଳିନ ଜ୍ୟୋତ୍ସ୍ନାର କାରୁଣ୍ୟ ଅଛି । ନିତ୍ୟାନନ୍ଦ ଓ ପ୍ରଭିଭା ଉଭୟେ ମୁଖ୍ୟତଃ ଗୀତିକବି । ତଥାପି ମୁକ୍ତଛନ୍ଦ କବିତା ଓ ଗଦ୍ୟ କବିତା ପ୍ରତି ଉଭୟଙ୍କର ବିଶେଷତଃ ନିତ୍ୟାନନ୍ଦଙ୍କର ଲକ୍ଷ୍ୟ ରହିଛି, ଯଦିବା ଏହା ସ୍ଥିର ହୋଇ ପାରିନାହିଁ । ପ୍ରାଚୀନ ସଙ୍ଗୀତର ମୋହାଛନ୍ନ ପ୍ରଭାବ ଉଭୟେ ଏଡ଼ିପାରି ନାହାନ୍ତି । କିନ୍ତୁ କବିତାର ଦୁର୍ବୋଧ୍ୟତା ନାହିଁ । 'ଶେଷଜହ୍ନ'ରେ କାରୁଣ୍ୟର ବ୍ୟଞ୍ଜନା ଥିଲେ ବି ଏହା ଆଶାର ଉଦ୍ଦୀପନା, ପୁଷ୍ଟ ଫସଲର ସମ୍ଭାବନା ମନରେ ଜାଗ୍ରତ କରେ, ଭବିଷ୍ୟଦଂଶ ଆଉ ସୌକୁମାର୍ଯ୍ୟ କଶୋର ଯୌବନର । ଉଭୟଙ୍କ ସାହିତ୍ୟ ସାଧନା ପଥ ପୁଷ୍ପାସ୍ତୃତ ହେଉ, ମୋର ଆନ୍ତରିକ କାମନା ।

କୁଞ୍ଜବିହାରୀ ଦାଶ

ତା ୭।୫।୭୨

# ଗଣଚିନ୍ତା ଓ ଅତ୍ୟାଧୁନିକ ଓଡ଼ିଆ କବିତା

ସେଦିନ ଜଣେ ଶିକ୍ଷିତ ତରୁଣ ବ୍ୟକ୍ତି କହିଲେ, 'ଅତ୍ୟାଧୁନିକ ଓଡ଼ିଆ କବିତା କେବଳ ଠୁଙ୍ଗା କମ୍ପାନୀଙ୍କୁ ପୋଷେଇଛି ।' ସେ ତରୁଣଙ୍କ ଯୁକ୍ତି ମୋତେ ଚମତ୍କୃତ କଲା । ଠୁଙ୍ଗା କମ୍ପାନୀ ସହିତ ସାହିତ୍ୟର ସମ୍ପର୍କକୁ ସେ ଯେଉଁପରି ଭାବେ ଉପସ୍ଥାପିତ କଲେ ତାର ନିହିତ ତଥ୍ୟ ଲଘୁ ହାସ୍ୟରୋଳ ଭିତରେ ନିଷ୍ପ୍ରଭ ହୋଇ ପଡ଼ିଲେ ବି ଅତ୍ୟାଧୁନିକ ସାହିତ୍ୟ ପ୍ରିୟ ଯେ କୌଣସି ଲୋକର ଚିନ୍ତା ଓ ଚୈତନ୍ୟରେ ଆନ୍ଦୋଳନ ସୃଷ୍ଟି କରିବା ସ୍ୱାଭାବିକ । ପରେ ପରେ ସେ ପାରମ୍ପରିକ ରୀତିରେ ଭଞ୍ଜଙ୍କ ସ୍ତାବକତା କଲେ । ବର୍ଣ୍ଣନାର ବିପୁଳତା, ରସପରିବେଷଣର ମହାର୍ଘତା, ଶବ୍ଦ-ଯୋଜନାର ପାଣ୍ଡିତ୍ୟ, ଅଳଙ୍କାରର ନୈପୁଣ୍ୟ ଆଦି କେତେକ ଦୃଷ୍ଟାନ୍ତ ଦେଇ ସେ ରୀତିଯୁଗୀୟ ସାହିତ୍ୟର ଭୂୟସୀ ପ୍ରଶଂସା କଲେ । ତାଙ୍କ ବିବେଚନାରେ ଅତ୍ୟାଧୁନିକ ଓଡ଼ିଆ କାବ୍ୟ କବିତା ଅନ୍ତଃସାର ଶୂନ୍ୟ ।

କେବଳ ସେ ନୁହଁନ୍ତି ଏ ଦେଶର ବହୁ ପ୍ରାଚୀନ ସାହିତ୍ୟ-ପ୍ରିୟ ବ୍ୟକ୍ତି ଓ ଅନୁଷ୍ଠାନର ମତ ଏହାଠାରୁ ତଫାତ୍ ନୁହେଁ । ଆଧୁନିକ ସାହିତ୍ୟ ବିରୁଦ୍ଧରେ ପ୍ରଥମ ଐତିହାସିକ ବିପ୍ଳବ ଇନ୍ଦ୍ର-ଧନୁ ମାଧ୍ୟମରେ ୧୮୯୩-୯୪ରେ ସୂତ୍ରପାତ ହୋଇଥିଲା । ସାହିତ୍ୟ ରାଜ୍ୟର ଆବଦ୍ଧ ଚିନ୍ତା ଓ ଗତାନୁଗତିକ ଆବେଦନରେ ପ୍ରଥମେ ବିପ୍ଳବ ଆଣିଥିଲେ ରାଧାନାଥ । କଳା ସୃଜନରେ ନୈର୍ବ୍ୟକ୍ତିକ ଆଦର୍ଶ ଓ ଆଶୀଷ ନେଇ ସେ ଦୀର୍ଘ ଦୁଇଶହ ବର୍ଷର ସାହିତ୍ୟିକ ପ୍ରବୃତ୍ତି ବୋଧରେ ପ୍ରଥମେ ଝଡ଼ ସୃଷ୍ଟି କଲେ । ଇଂରେଜୀ ଶିକ୍ଷା ଓ ପାଶ୍ଚାତ୍ୟ ସଭ୍ୟତାର ପ୍ରତିଘାତ, ତଥା ସଂକ୍ରମଣର ଫଳ ସ୍ୱରୂପ ଆଧୁନିକ ସାହିତ୍ୟର ଭିତ୍ତିସ୍ଥାପନ କାଳରେ ଏ ସାହିତ୍ୟରେ ସମନ୍ୱୟୀ କରଣ ହିଁ ଦେଖା ଦେଇଥିଲା । ଏହି ଯୁଗାଦର୍ଶ, ଗଣ-ଚେତନା ଓ ପ୍ରତିକ୍ରିୟାର ଅମୃତ ଫଳରୂପେ ଦେଖାଦେଲେ ଗଙ୍ଗାଧର । ନବୀନର ସ୍ତୁଞ୍ଜ ଉପରେ ପ୍ରାଚୀନ ପୌରାଣିକତାର

ଆଦର୍ଶ ସଂଯୋଜନ କରି ରାଧାନାଥ ସାହିତ୍ୟ ଆନ୍ଦୋଳନ-ବିରୋଧୀ କାଳରେ ସେ ଲୋକ ପ୍ରଶଂସା, ଆଦର ଲାଭ କଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ତାଙ୍କର ଗୁଞ୍ଜ ସାହିତ୍ୟ ସୃଷ୍ଟିର ନିକଷ ଓ ମାପ କାଠି ନ ହୋଇ ରାଧାନାଥ ସାହିତ୍ୟ ହିଁ ହୋଇ ରହିଲା । 'ବିଜୁଳି'ର ଝିଲିକ୍ ଦିବାଲୋକର ଅସ୍ପଷ୍ଟ 'ଇନ୍ଦ୍ରଧନୁ' ବିରୁଦ୍ଧରେ ଅନାଗତ ସମୟ ପାଇଁ ଯଥାର୍ଥ ଦିଗସଙ୍କେତ ଦେଇଥିଲା । ସେହି ଆଦର୍ଶ ତେଣୁ ସତ୍ୟବାଦୀ ଯୁଗର ଚିନ୍ତାଧାରାରେ ଉଗ୍ର ଜାତୀୟତାର ମିଶ୍ରଣ ସହିତ ଅନୁସରିତ ହେଲା । ସେହି ସଙ୍କେତ ହିଁ ସବୁଜ ଯୁଗର ପ୍ରାଣକେନ୍ଦ୍ରକୁ ମଥିତ କରି ନୂତନର ପ୍ରେରଣା ଦେଲା । ଆଜି ଅତ୍ୟାଧୁନିକ ସାହିତ୍ୟରେ ତାର ବ୍ୟାପକ ପରୀକ୍ଷା ବୃହତ୍ତର ପରିବେଶରେ ସଚରାଚର ଉପଲବ୍ଧ ହେଉଅଛି । ଅତ୍ୟାଧୁନିକ ଯୁଗର ଓଡ଼ିଆ କବିତା ରାଧାନାଥଙ୍କ ସମୀକରଣ ଯୁଗଠାରୁ ତେର ଊର୍ଦ୍ଧ୍ୱକୁ ଯାଇ ନିଚ୍ଛକ୍ ଭାବରେ ସ୍ୱତନ୍ତ୍ର ସୃଷ୍ଟିରେ ରୂପାନ୍ତରିତ ହୋଇଛି । ଏହି ସୃଷ୍ଟି ବିରୁଦ୍ଧରେ ତେଣୁ ଗଣ ସମର୍ଥନ ଏହାର ପରୀକ୍ଷା ଓ ନିରୀକ୍ଷା କାଳରେ କେତେକାଂଶରେ ନରହିବା ସ୍ୱାଭାବିକ ।

ଅତ୍ୟାଧୁନିକ ଓଡ଼ିଆ କବିତାକୁ ବହୁଲୋକ ସମର୍ଥନ କରୁ-ନାହାଁନ୍ତି । ତେଣୁ ଏହା ଗଣମୁଖୀ ନୁହେଁ ବୋଲି ଅନେକ ବିଜ୍ଞ ସମାଲୋଚକ ମତବ୍ୟକ୍ତ କରନ୍ତି । ସହରମାନଙ୍କର ସାହିତ୍ୟିକ ଓ ସାହିତ୍ୟସେବୀ ମହଲରେ ଏହାର ଆଲୋଚନା ଗତ ଦଶବର୍ଷ ଧରି ବ୍ୟାପକ ହୋଇଅଛି । ଅନେକ ଅତ୍ୟାଧୁନିକ କବି ନିଜ କବିତାର ପକ୍ଷ ସମର୍ଥନ କରି ସଭା ସମିତିରେ ଅତି ସ୍ପଷ୍ଟ ଓ ନିର୍ଭୀକ ଭାବରେ କହିଛନ୍ତି—ସମସ୍ତେ କବିତା ବୁଝିବା ପାଇଁ କବିତା ଲେଖା ହୁଏନାହିଁ । ଭଞ୍ଜ ମଧ୍ୟ ସମସ୍ତଙ୍କର ବୋଧନଥିଲେ ଯେତେଜଣ ବୁଝୁଛନ୍ତି, ସେତିକ ହିଁ ବୁଝନ୍ତୁ, ତାହା ହିଁ କବିତା ପାଇଁ ଗଣତାନ୍ତ୍ରିକତା । ନିଷ୍ଠୁର ଭାବରେ ଗଣ ମାଧ୍ୟମରେ ଗଣର ଚିନ୍ତା ହିଁ କବିତାରେ ପ୍ରକାଶ ପାଉଛି । ଏ ଉକ୍ତି ଅତି ତାତ୍ପର୍ଯ୍ୟପୂର୍ଣ୍ଣ । ଏଠି ସ୍ୱତଃ ପ୍ରଶ୍ନ ଉଠେ—କବିତାରେ ତେବେ ଗଣ ଚିନ୍ତାର ଅର୍ଥ କଣ ? ଗଣ ଚିନ୍ତାର ଆଦର ସବୁ କାଳରେ କବିତା ହାସଲ

କରି ପାରୁଛି କି ? ବର୍ତ୍ତମାନ ଯୁଗରେ ( ଯହିଁ କବିତା ବା ସାହିତ୍ୟ ସୃଷ୍ଟି ଯୁଗଚିନ୍ତାର ବିଶେଷ ହୋଇଥାଏ ) କବିତା ଯୁଗମୁଖୀ କି ନାହିଁ ? ଏହାର ଯୁଗୋଚିତ ମୂଲ୍ୟ ବା ମହାନ୍ ମାନବିକ ମୂଲ୍ୟ ଓ ଯୁଗୋଚିତ ପ୍ରେରଣା ଅଛି କି ନାହିଁ ?

ଏସବୁ କବିତା ରାଜ୍ୟରେ ଚିନ୍ତାର ବିଷୟ । ସ୍ୱାଧୀନତା ପରରୁ ଓଡ଼ିଆ ସାହିତ୍ୟର ଗତି ଓ ରୁଚି ବହୁ ମାତ୍ରାରେ ପୃଥିବୀର ସମଗ୍ର ପ୍ରାନ୍ତୀୟ ସାହିତ୍ୟର ଗତି ଓ ରୁଚି ସହିତ ସାମଗ୍ରିକ, ସମଗତିଶୀଳ । ଆଜିର ସାମାଜିକ ରୁଚି ସହିତ ପାଦକୁ ପାଦ ମିଳାଇ ଆମ ସାହିତ୍ୟକୁ ଆମେ ଉର୍ଦ୍ଧ୍ୱକୁ ଉତ୍ତୋଳିତ କରିବା ନା ଅତୀତର ମୂଲ୍ୟରେ ଯଥାର୍ଥତ ସନ୍ତୁଷ୍ଟ ରହି ସେହି କ୍ରମ ଓ ପରମ୍ପରାର ଅନୁସରଣ କରିବା—ତାହାହିଁ ଚିନ୍ତା କରିବାର କଥା । କେବଳ ଆର୍ଥନୀତିକ ଓ ବୈଜ୍ଞାନିକ ପ୍ରଗତିକୁ ଆଧାର କରି ଜାତିର ପ୍ରଗତି ସମ୍ଭବ ହୁଏନାହିଁ । ଦେଶ ବା ଜାତିର ପ୍ରଗତି ସହିତ ତାର ଚିନ୍ତାର ବିପ୍ଲବ ଓ ବିକାଶ ସାହିତ୍ୟ ପ୍ରକାଶ କରେ । ତେଣୁ ବାହାର ଜଗତ ସହିତ ନିଜକୁ ପରିଚିତ କରିବା ପାଇଁ ବଳିଷ୍ଠ ସାହିତ୍ୟ ସୃଷ୍ଟିର ମାଧ୍ୟମ ଅପରିହାର୍ଯ୍ୟ । ପୃଥିବୀର ଶ୍ରେଷ୍ଠ ସାହିତ୍ୟ ଇଂରାଜୀ ଯେଉଁ ପଦକ୍ଷେପ ନେଉଅଛି, ତାହା ଅଳ୍ପେ ବିହୁତରେ ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟମାନଙ୍କୁ ପ୍ରଭାବିତ କରିବା ସୁନିଶ୍ଚିତ । ପାଶ୍ଚାତ୍ୟ ସାହିତ୍ୟର ତାଙ୍କୁ ପରିହାର କରିବା ଆଜିର ସଂସ୍କୃତିଶୀଳ କୌଣସି କବି ବା ଲେଖକ ପକ୍ଷରେ ଅସମ୍ଭବ । ଆଧୁନିକ ଓଡ଼ିଆ ଓ ପ୍ରାଚୀନ କାବ୍ୟ କବିତାର ପ୍ରଭେଦ ବସ୍ତୁତଃ ଏହି ଚିନ୍ତା ଓ ସଂସ୍କୃତିର ପ୍ରଭେଦ ଉପରେ ଦଣ୍ଡାୟମାନ । ଏହି ଚିନ୍ତାକୁ ନିଜସ୍ୱ କରି ନଥିବା ବ୍ୟକ୍ତି ଓ ଏ ଚଳଣୀକୁ ଆଦର କରି ନଥିବା ବ୍ୟକ୍ତି ଏ କବିତା ପ୍ରତି ନାତଶ୍ରଦ୍ଧ ହେବା ସ୍ୱାଭାବିକ ।

ସାହିତ୍ୟ ଯୁଗର ପ୍ରତିନିଧି ଏହା କେବଳ ଯୁଗପ୍ରକାଶର ମାଧ୍ୟମ ନୁହେଁ, ଯୁଗର ବିକାଶ ଚିହ୍ନ ମଧ୍ୟ ଏଥିରେ ନିହିତ ଥାଏ । ତେଣୁ ଯେ କୌଣସି ଉଚ୍ଚ କୋଟୀର ସାହିତ୍ୟ ସମସାମୟିକ ଯୁଗର ଅନବଦ୍ୟ ସ୍ୱାକ୍ଷର ବହନ କରି ଯୁଗଚେତନାର ବାର୍ତ୍ତାବହରୂପେ

ଲୋକ ସମର୍ଥନ ଦାବୀ କରେ । ଏହାର କାରଣ ସ୍ୱରୂପ ସ୍ରଷ୍ଟା-ପୁରୁଷର ମନସ୍ତତ୍ତ୍ୱକୁ ସମୀକ୍ଷା କରାଯାଇ ପାରେ । ଯେଉଁ ଯୁଗରେ କବି ବା ଲେଖକକର ଜନ୍ମ । ତାହାର ଚଳଣୀକୁ ନିଜ ଲେଖନୀର ଅଙ୍କିତତ୍ତ୍ୱ ପ୍ରଦାନ କରିବାରେ ସେ ସଙ୍କୁଚିତ ହେଲେ ତାର ଗତି ଆବଦ୍ଧ ହେବ । ଓଡ଼ିଆ କବିତା-ସାହିତ୍ୟର ପ୍ରବାହମାନତାରେ ଅସହିଷ୍ଣୁ ହେଉଥିବା ପାଠକ ଗୋଷ୍ଠୀ ସର୍ବପ୍ରଥମେ ନିଜର ଯୁଗସ୍ଥିତିକୁ ସମୀକ୍ଷା କରିବା ଉଚିତ । ପ୍ରାକ୍-ସ୍ୱାଧୀନତା ଯୁଗର ଓଡ଼ିଆ ସାହିତ୍ୟର ଗତି ଓ ରୁଚିକୁ ଅନେକ ପରିମାଣରେ ଦୁଇଟି ବିଶ୍ୱଯୁଦ୍ଧର ପ୍ରଭାବ ଓ ପ୍ରତିକ୍ରିୟା ମାର୍କସୀୟ ଚିନ୍ତାଧାରାର ପ୍ରଭାବ, ସାହିତ୍ୟ ରାଜ୍ୟରେ ବ୍ୟାପକ ମନସ୍ତାତ୍ତ୍ୱିକ ସମୀକ୍ଷା ଏବଂ ସର୍ବୋପରି ଭାରତର ସ୍ୱାଧୀନତା ଆନ୍ଦୋଳନ ନିୟନ୍ତ୍ରିତ କରିଛି । ଏସବୁ କ୍ରାନ୍ତିକାରୀ ଘଟଣାର ପ୍ରଭାବ ମଣିଷର ଅସ୍ଥି ଓ ମଜ୍ଜାରେ, ବ୍ୟକ୍ତିଗତ, ପାରିବାରିକ ତଥା ସାମାଜିକ ଜୀବନରେ ସ୍ପଷ୍ଟ ମୁଦ୍ରଣ ଦେଇଅଛି । ତେଣୁ ତାହାର ଅପରିହାର୍ଯ୍ୟ ପ୍ରଭାବରୁ କବିତା ବିମୁକ୍ତ ହୋଇପାରିବ କି ? ଯୁଦ୍ଧ ପରବର୍ତ୍ତୀ ଅସହାୟତା, କର୍ମକ୍ଳାନ୍ତି, ଅଭାବ ଓ ଅନାଟନ, ମଣିଷର ଜୈବିକ ସ୍ତରରୁ ଚିନ୍ତା ସ୍ତରକୁ ସ୍ଥାନମିତ ହୋଇଥିବାବେଳେ ସହଜ ପ୍ରଣୟ ମୂଳକ ଦୀର୍ଘ ବିଳମ୍ବିତ କାହାଣୀ କହିବାକୁ କବିର ସ୍ପୃହା ନାହିଁ ବା ଶୁଣିବାକୁ ପାଠକର ପ୍ରତୀକ୍ଷା ନାହିଁ । ଜୀବନ ଯେପରି ନିରାଭରଣ, ନିରଳଙ୍କୃତ ହୋଇଛି, କବିତା ମଧ୍ୟ ସେହିପରି ନିର୍ଦ୍ଦିଷ୍ଟ ଗ୍ରନ୍ଥିରୁ ମୁକ୍ତିଲାଭ କରି ବହୁବର୍ଣ୍ଣ ଦୃଷ୍ଟି ଓ ଦର୍ଶନ ମଧ୍ୟରେ, ପାଶ୍ଚାତ୍ୟ ଚିନ୍ତାଧାରା ଅନୁପ୍ରେରିତ ଅତ୍ୟାଧୁନିକ ଉପାଦାନ ମଧ୍ୟରେ ନିଜକୁ ପରୀକ୍ଷା କରୁ-ଅଛି । ଏହି ପରୀକ୍ଷାର ସ୍ପଷ୍ଟ ସ୍ୱର ଗଣସ୍ୱର ବା ଗଣ ଧର୍ମୀ ନ ହୋଇ ବ୍ୟକ୍ତି ଧର୍ମୀ ହୋଇଅଛି । ଜୀବନପାଇଁ ଅନିଶ୍ଚିତତା, କର୍ମକ୍ଳାନ୍ତି, ବ୍ୟସ୍ତତା, ଓ ଅଭିଯୋଗ ମାନବର ସାମାଜିକ ମୂଲ୍ୟ-ବୋଧକୁ ସମ୍ପୂର୍ଣ୍ଣ ବଦଳାଇ ଦେଇଛି । ଏ ଯୁଗ ସମ୍ପୂର୍ଣ୍ଣରୂପେ ବ୍ୟକ୍ତି ସଚେତନ ଯୁଗ । ଏହି ବ୍ୟକ୍ତି ସଚେତନତା ସାମାଜିକ ନିଷ୍ପତ୍ତି ଭିତରୁ ଆତ୍ମୋଦ୍ଧାର କରି ନିଜକୁ ପ୍ରତିଷ୍ଠିତ କରିବା ପାଇଁ

ସଂଗ୍ରାମୀ ହୋଇ ଉଠିଲା ବେଳେ କବିତା ମାଧ୍ୟମରେ ଗଣଆବେଦନର ଆକାଙ୍‌କ୍ଷା ଅନେକ ସମୟରେ ଅସ୍ତମିତ ହେବା ସ୍ୱାଭାବିକ ।

ଆଧୁନିକ ଓଡ଼ିଆ କବିତା ବିରୁଦ୍ଧରେ ଗୋଟିଏ ଅଭିଯୋଗ ହେଉଛି ଏ କବିତାରେ ଗୀତ ନାହିଁ ଅର୍ଥାତ୍ ଆଜିର କବିତା ସାଙ୍ଗୀତିକତାକୁ ପରିହାର କରିଛି । ହୁଏତ ଏହି ସାଙ୍ଗୀତିକତା ପ୍ରାଚୀନ କାବ୍ୟ କବିତାକୁ ଏତେଦୂର ଆଦରଣୀୟ କରିଥିଲା । ସେଥିପାଇଁ ଯେତେ ଅବୋଧ ହେଲେ ମଧ୍ୟ ଅନ୍ତଃପୁରର ଯୋଷା ଓ ନୃତ୍ୟରତା ବାରଙ୍ଗନାଠାରୁ ଆରମ୍ଭ କରି ସଭାର ପଣ୍ଡିତ, ଖେତର କୃଷୀ ସମସ୍ତେ ଏହାକୁ ଆବୃତ୍ତି କରିପାରୁଥିଲେ । କିନ୍ତୁ ମଣିଷ ଜୀବନରୁ ଛନ୍ଦ ତୁଟି ଗଲାପରେ, କବିତାରେ କେଉଁ ଛନ୍ଦ ଓ ରାଗରାଗିଣୀର ଆଶା ବା ଆମେ କରିପାରିବା ? ଗୀ୍‌ କବିତା (Lyrics)ର ହ୍ରସ୍ୱମୂଲ୍ୟର କାରଣ ଦେଖାଇ ସଚ୍ଚିଦାନନ୍ଦ ଯଥାର୍ଥ ଲେଖିଛନ୍ତି, "ଯେଉଁ ସଭ୍ୟତା ଦିନେ ଗୀତି କବିତାର ମୂଳ ଉତ୍ସର ପ୍ରେରଣା ଯୋଗାଇ ଥିଲା ସେ ସଭ୍ୟତା ଆଜି ଆଉ ନାହିଁ । ବର୍ତ୍ତମାନ ସମାଜର ସ୍ୱବିରୋଧ ସଂଘର୍ଷ ଓ ନାନା ଘଟଣା ସ୍ରୋତର ଝଡ଼ ହାଓ୍ୱା କବିର ନିରୋଳା କୁଞ୍ଜବନରେ ପ୍ରତି ମୂହୂର୍ତ୍ତରେ ଧକ୍କା ମାରୁଛି । ସମାଜ ସମ୍ପର୍କର ବର୍ତ୍ତମାନ ସ୍ତରରେ କବି ଆଉ ଏକ ଅସମ୍ବନ୍ଧ, ବସ୍ତୁ ନିରପେକ୍ଷ ସ୍ୱକୀୟ ଜଗତରେ ଶାନ୍ତିର କଳ୍ପନା କରି ପାରୁନାହିଁ ।"

× × × ×

ଏହାଛଡ଼ା ଆଉ ଗୋଟିଏ ବଡ଼ ସାମାଜିକ କାରଣ ହେଉଛି ଯେ ଯେଉଁମାନେ ଗୀତି କାବ୍ୟର ଗ୍ରାହକ ଥିଲେ· ଯେଉଁମାନେ କବିର ଅଳସ ମୁହୂର୍ତ୍ତର ରଚନାକୁ ସ୍ୱରର ମୂର୍ଚ୍ଛନାରେ ଇନ୍ଦ୍ରଜାଲିତ କରି ଜନସାଧାରଣଙ୍କ ଭିତରେ ଖେଳେଇ ଦେଉଥିଲେ ସେମାନେ କ୍ରମେ ସମାଜରୁ ଲୋପ ପାଉଛନ୍ତି । ପାଠକ ବୁଝିବା ଉଚିତ ଯେ ସେ ଆଜି କବିତାକୁ ସୁର ଧରି ନବୋଲି ପତ୍ରିକା ଦେଖି ପଢ଼ିବାକୁ ଓ ଆବୃତ୍ତି କରିବାକୁ ଭଲ ପାଉଛି । ତେଣୁ କବିତାରୁ ଗୀତ ମରିବା ସ୍ୱାଭାବିକ । ଦ୍ୱିତୀୟ ଅଭିଯୋଗ ହେଉଛି ଆଧୁନିକ ଓଡ଼ିଆ କବିତା ଅତି ମାତ୍ରାରେ ଅବୋଧ । ଏହା ଅନେକ ମାତ୍ରାରେ ସତ୍ୟ ।

ଏହାର କାରଣ ସ୍ୱରୂପ ପାଶ୍ଚାତ୍ୟ ସାହିତ୍ୟର ସଂସର୍ଗ ଓ ତଜ୍ଜନିତ ଭାବାଦର୍ଶର ସଂକ୍ରମଣ ବିଷୟ ଉଲ୍ଲେଖ କରାଯାଇପାରେ । ଆଜିର ଓଡ଼ିଆ କବିତାରେ ଯେଉଁ ସଙ୍କେତବାଦ ବା ପ୍ରତୀକବାଦ ସରିଆଲିଜମ୍, ମେଟାଫିଜିକାଲ୍ ସ୍ପେକୁଲେସନ୍, ଅସ୍ତିତ୍ୱବାଦ (Existentialism), transfer of Epithets ଏବଂ ସର୍ବୋପରି ଭାବସାନ୍ଦ୍ରତା (Compactness of ideas) ଦେଖାଦେଇଛି ତାହାହିଁ ଅପେକ୍ଷାକୃତ କମ୍ ଧୈର୍ଯ୍ୟଶୀଳ ପାଠକକୁ ମହାଦ୍ୱନ୍ଦରେ ପକାଇଛି । ବିଶେଷତଃ ଅତୀତର କବିତା ଶବ୍ଦ ବୈଚିତ୍ର୍ୟ ପୂର୍ଣ୍ଣ ବିଭିନ୍ନ ଅର୍ଥବ୍ୟଞ୍ଜକ ଏବଂ ଧ୍ୱନିପ୍ରଧାନ ଥିଲା । ଆଜିର କବିତା ସମ୍ପୂର୍ଣ୍ଣରୂପେ ଭାବପ୍ରଧାନ । ଏହି ଭାବନା ଅତି-ମାତ୍ରାରେ ବ୍ୟକ୍ତି କେନ୍ଦ୍ରିକ ଓ ମନସ୍ତତ୍ତ୍ୱଜନିତ । ତେଣୁ ପାଠକର ଚିନ୍ତା ଓ ଲେଖକର ଚିନ୍ତା ମଧ୍ୟରେ ସମନ୍ୱୟ ସ୍ଥାପନ ସମ୍ଭବ ହୋଇ ପାରୁନାହିଁ ଏହା ଧୈର୍ଯ୍ୟ ଓ ସହାନୁଭୂତି ସାପେକ୍ଷ । ସେଥିପାଇଁ ବି ଆଜିର ପାଠକ ଆଦୌ ପ୍ରସ୍ତୁତ ନୁହେଁ । ପାଠକ ଓ ଲେଖକ ମଧ୍ୟରେ ଏହି ସଦ୍‌ଭାବ ପ୍ରତିଷ୍ଠିତ ନହେବାପର୍ଯ୍ୟନ୍ତ ଆଧୁନିକ କବିତାର ସୁବୋଧତା ଦାବି କରିବା ଅଯୌକ୍ତିକ ହେବ ।

ଦ୍ୱିତୀୟ ଏବଂ ଏକ ଗୁରୁତ୍ୱପୂର୍ଣ୍ଣ ଅଭିଯୋଗ ହେଉଛି ଆଧୁନିକ କବି ପ୍ରାଚୀନ ରାଗରାଗିଣୀ ଓ ଛନ୍ଦକୁ ଛାଡ଼ି ଗଦ୍ୟମୁଖୀ ହୋଇ-ପଡ଼ିଛି । ତେଣୁ ବାକ୍‌ଛନ୍ଦର ପ୍ରଚଳନ ସଚରାଚର ଆଧୁନିକ କବିତାରେ ଦେଖାଯାଉଛି । ଏଥିପାଇଁ ଏକମାତ୍ର ଯୁକ୍ତି ହେଉଛି ଭାବପ୍ରଧାନ କବିତାର ପ୍ରକାଶ ସାବଲୀଳତାକୁ ଛନ୍ଦର ନଥି ଓ ନିଗଡ଼ ମଧ୍ୟରେ ଆବଦ୍ଧ କରିବାକୁ ଆଜିର କବି ପରାଙ୍ମୁଖ । ବାକ୍‌ଛନ୍ଦ ସହିତ କାବ୍ୟିକ ଛନ୍ଦର ମିଳନ ତାର ଲକ୍ଷ୍ୟ । "ଗଦ୍ୟର ପରିଚ୍ଛନ୍ନତା ସହିତ କାବ୍ୟର ଆବେଗ ସଞ୍ଚାରୀ ସ୍ୱଭାବର ସମ୍ମିଶ୍ରଣ ଏଯୁଗୀୟ କବିତାର ପ୍ରଧାନ ଆଗ୍ରହ । ସେଥିଯୋଗୁ ଖାଲି ପ୍ରଚଳିତ ପଦ୍ଧତିରେ ନାନାପ୍ରକାର ନୂତନ ପ୍ରୟୋଗ ଓ ପରୀକ୍ଷାଆଣି କବିମାନେ ସନ୍ତୁଷ୍ଟ ନୁହଁନ୍ତି ବରନ୍ତୁ ଗଦ୍ୟ କବିତା ନାମକ ଭାବପ୍ରକାଶର ଆଉ ଏକ ନୂଆ ମାଧ୍ୟମ ସୃଷ୍ଟି କରିବା ଦର୍କାର ମନେ କରୁଛନ୍ତି ।" ହୁଏତ ଏହି ଭାବ ପ୍ରକାଶ ବା ଭାବମୁକ୍ତି ନିମିତ୍ତ ଏ ଜାତିର ମହାକବି

ସାରଳା ଦାସ ସମଗ୍ର ମହାଭାରତକୁ 'ଦାଣ୍ଡୀ' ବୃତ୍ତରେ ରଚନା କରିଥିଲେ । ମଧ୍ୟଯୁଗରେ ସଂସ୍କୃତ ସାହିତ୍ୟର ସଂସର୍ଗ ଓଡ଼ିଆ ସାହିତ୍ୟର ସେହି ସରଳ ନିରାଡ଼ମ୍ବର ଧାରାକୁ ପଦ୍ଧତିର ନିଗଡ଼ ଭିତରେ ଆବଦ୍ଧ କରିଦେଲା । ଆଜିର ଗଦ୍ୟ ଛନ୍ଦକୁ ସେହି ଦାଣ୍ଡୀ ବୃତ୍ତର ଏକ ରୂପାନ୍ତର ରୂପେ ଗ୍ରହଣ କରାଯାଇ ପାରେ । ପୁନଶ୍ଚ କେବଳ ପଦବନ୍ଧ (Poetic diction) ଦ୍ୱାରା ଆଜିର ଗଦ୍ୟକବିତା କବିତାର ସ୍ୱୀକୃତ ଦାବୀ କରି ବସୁଚି ।

ଭାବସାନ୍ଦ୍ରତା ବା ( Compactness of ideas ) ଅଳ୍ପ କଥାରେ ବହୁକଥା କହିବାର ଓ ବହୁଅର୍ଥ ପ୍ରକାଶକରିବାର ଦୁରୂହ ବ୍ୟାପାରରେ ଆଜିର କବି ଅଗ୍ରଗାମୀ । ସମାଜର ନାନା ବିକାଶ ସହିତ ଭାଷାର ବିକାଶ ଶବ୍ଦର ଅର୍ଥଗତ ମୂଲ୍ୟକୁ ଅନେକ ପରିମାଣରେ ବିଭିନ୍ନତା ଦେଇଛି । ତେଣୁ ଆଜି ଅନେକ ସମୟରେ ଗୋଟିଏ ଶବ୍ଦହିଁ ଗୋଟିଏ କବିତାର ମୁଖ୍ୟ ଅଂଶ । ସେହି ଶବ୍ଦର ଶାବ୍ଦିକ ମୂଲ୍ୟ ବୃଦ୍ଧି ପ୍ରାପ୍ତ ହୋଇଥିବାରୁ ଏବଂ ଅର୍ଥ ସମୃଦ୍ଧି ( Implication ) ସ୍ଥାନବିଶେଷରେ ବିଚିତ୍ର ହୋଇଥିବାରୁ ଶବ୍ଦ ବିଭିନ୍ନ ଅର୍ଥବୋଧକ ହେଉଅଛି । ବେଳେ ବେଳେ ଲେଖକର ଦୃଷ୍ଟି ଭଙ୍ଗୀ ନେଇ ଏହା ସୂଚନାତ୍ମିକା ରୂପେ ଆତ୍ମପ୍ରକାଶ କରୁଛି । ଏସବୁ ସହିତ ପାଠକର ପରିଚିତି ନ ଆସିଲେ ଆଧୁନିକ କବିତାର ପ୍ରାଣ ସହିତ ତାର ପ୍ରଣୟ ବା କାହୁଁ ସମ୍ଭବ ହେବ ? ଆଜିର କବି ପ୍ରାଚୀନ ଉପମା ଉପମେୟର ବନ୍ଧାଗତ ରୀତିକୁ ଛାଡ଼ି ପ୍ରାତ୍ୟହିକ ଜୀବନରୁ ରୂପକଳ୍ପ ଓ ଚିତ୍ରକଳ୍ପ ସାଉଁଟିବାରେ ବ୍ୟସ୍ତ । ଏହା ବ୍ୟକ୍ତିସ୍ୱାତନ୍ତ୍ର୍ୟ ଯୁଗର ଏକ ଅପରିହାର୍ଯ୍ୟ ପ୍ରୟାସ ରୂପେ ଉଲ୍ଲେଖ କରାଯାଇ ପାରେ । ସେତିକି ସ୍ୱାଧୀନତା କବିର ଏକାନ୍ତ ଆପଣାର—ରକ୍ଷଣଶୀଳତାର ସ୍ତାବକ ମାନେ କ୍ଷିପ୍ତ ହେଲେ ବି ଆଧୁନିକ କବି ସେଥିପାଇଁ ନିରୁପାୟ ।

ଗଣଚିନ୍ତାର ଏହି ସଂଘର୍ଷକୁ ସାମାଜିକ ଜୀବନ ଓ ଚିନ୍ତାର ସଂଘର୍ଷରୂପେ ନିର୍ଦ୍ଧାରିତ କରାଯାଇ ପାରେ । ସେତିକିବେଳେ ଅତ୍ୟାଧୁନିକ କବିତା ତେଣୁ ସମଗ୍ରର ଅନୁମୋଦନ ଲାଭ କରିବ ବୋଲି କହିବା ହାସ୍ୟାସ୍ପଦ । ଆଜିର କବିତା ପରୀକ୍ଷଣୀୟ ସ୍ତରରେ ଆଉ କବିମାନେ ଆଜି ପ୍ରୟୋଗବାଦୀ (experimentalist) ।

ଏହାର ସୃଷ୍ଟି ଅନାଗତ ଯୁଗର ସାହିତ୍ୟ ଅପେକ୍ଷା ରଖୁଛି । ତଥାପି ସାଂପ୍ରତିକ ପାଠକର ପଠନ ସଂପ୍ରୀତି ଓ ଉପଲବ୍ଧି-ପ୍ରଚେଷ୍ଟା ସର୍ବାଦୌ ଆବଶ୍ୟକ । ଦାୟିତ୍ୱ କବି ଓ ପାଠକ—ଏ ଉଭୟଙ୍କର ସମାନ । ଅଜ୍ଞାତ ପ୍ରତି ଅସନ୍ତୋଷ ଉନ୍ନତିର ଯଥାର୍ଥ ଅନ୍ତର୍ନିହିତ ସ୍ୱର । ଅଜ୍ଞାତ ପ୍ରତି ଅସନ୍ତୁଷ୍ଟ ଆଜିର କବିତା ନିଜ ବାଟରେ ଗୃହଳୁଥିଲାବେଳେ ନିନ୍ଦା ଓ କୁତ୍ସା ତାର ସଂପଦ ହେଉ । ତଥାପି ପ୍ରଗତି ତାର କାମ୍ୟ । ପରିଗତ ଆଗ୍ରହ ଗତିକୁ ମନ୍ଥର କରେ । ଉନ୍ନତି କିନ୍ତୁ ସାହିତ୍ୟର ଏକାନ୍ତ କାମନା ।

ଏହିସବୁ ଦୃଷ୍ଟିକୋଣରୁ 'ଆମ କବିତା'କୁ ସହୃଦୟ ପାଠକମାନେ ବିଗ୍ରହ କଲେ ଆମର ଶ୍ରମ ସାର୍ଥକ ହୋଇଛି ବୋଲି ମଣିବୁ ।

'ଆମ କବିତା' ପ୍ରକାଶ ନିମିତ୍ତ ପୂଜ୍ୟ ଅଧ୍ୟାପକ ଡକ୍ଟର କୁଂଜବିହାରୀ ଦାଶ ନିୟତ ଉତ୍ସାହ ଦେଇଛନ୍ତି ଓ ଶ୍ରମକରି ନିଜର ଅଭିମତ ପ୍ରଦାନ କରିଛନ୍ତି ।

ଆମର ପୂଜନୀୟ ଅଧ୍ୟାପକ ଶ୍ରୀଯୁକ୍ତ ଜାନକୀବଲ୍ଲଭ ମହାନ୍ତି (କ) ଏବଂ ଗଳ୍ପକାର ଶ୍ରୀ ରାମଚନ୍ଦ୍ର ମିଶ୍ର (ଫତୁରାନନ୍ଦ) ଜାଳିଚନ୍ତି ସ୍ନେହର ସଳିତା ;

ଶିଳ୍ପୀବଂଧୁ ଶ୍ରୀ ଉଦୟନାରାୟଣ ଜେନା ପ୍ରଚ୍ଛଦପଟ ଆଙ୍କିଚନ୍ତି ଓ ପୁସ୍ତକ ସଜ୍ଜାର ରୂପ ପରିକଳ୍ପନା ଦେଇଛନ୍ତି ;

ବଂଧୁ ଶ୍ରୀ ଦେବେନ୍ଦ୍ରଚନ୍ଦ୍ର ମହାପାତ୍ର, ଶ୍ରୀ ବନବିହାରୀ ଦାସ, ଶ୍ରୀ ଚିତ୍ତରଞ୍ଜନ ମିଶ୍ର ନାନାମତେ ଆଗ୍ରହ ଓ ପ୍ରେରଣା ଦେଇଛନ୍ତି;

ମୁଦ୍ରାକର ଶ୍ରୀ କେଶବ ଚରଣ ରଥ ମୁଦ୍ରଣ ସଜ୍ଜାର ଭାର ନେଇଛନ୍ତି;

—ସମସ୍ତଙ୍କ ପାଖରେ ଆମେ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଚୁ ।

ଲେଖକ

ତା ୨୦ । ୫ । ୭୨

# ସୂଚୀ

ବିଷୟ ପୃଷ୍ଠା

—ଅଗ୍ନିଶିଖା—

বিষয় ... পৃষ্ঠা



## —ଶେଷ ଜନ୍ମ—

ବିଷୟ ପୃଷ୍ଠା





ସୁଜନ,

'ଅଗ୍ନିଶିଖା' ବସ୍ତୁବର ପ୍ରତୀକ ନୁହେଁ, ସାଧନାର ସ୍ୱପ୍ନ ନୁହେଁ କି ଭାଗ୍ୟ ଗଢ଼ିବାର ଶପଥ ନୁହେଁ । ଏ ଫୁଲଟାଏ ମାତ୍ର । ଗଛର ସବୁଜ ପତ୍ରରେ ହସି ହସି ସୂର୍ଯ୍ୟ ଆଶାରେ ଉଡ଼ିବାକୁ ଚାହିଁଥାଏ । ରକ୍ତଲାଲ ଦେହରୁ ତାର କେତେ ବ୍ୟଥା ଆଉ ଆନନ୍ଦର ନିଃଶ୍ୱାସ ଛୁଟେ । ରବୀନ୍ଦ୍ରନାଥଙ୍କ ଅତି ଆଦରର ଫୁଲଟାଏ —'ଅଗ୍ନିଶିଖା'

ତାପ୍ରତି ମୋର ମମତା ଅସୀମ । କାରଣ ତୁମର ସ୍ନେହ ଆଉ ଆଗ୍ରହର ସଞ୍ଚୟ ନେଇ ସେ ଫୁଲଟି ପ୍ରତି ମୋର ମନ ଢଳିଯାଏ । ତୁମର ଉତ୍ସାହ ଅନୁଭବ, ଆଶିଷ ଆଉ ପ୍ରେରଣା 'ଅଗ୍ନିଶିଖା'କୁ ବୁଝିବାକୁ ଆଉ ବୁଝି ଟେଙ୍ଗଦେବାକୁ ସବୁଦିନେ ପ୍ରେରଣା ଦେଇଚ । ଫୁଲ ଆଉ ମଣିଷକୁ ମୁଁ ସମାନ ଭାବରେ ଦେଖିନ—କାରଣ ଉଭୟେ ମୋ ଲେଖାକୁ ଛୁଇଁଚନ୍ତି, କାରୁଣ୍ୟ ଆଉ କୋମଳତାରେ ଅନ୍ତରକୁ ଥରେଇଚନ୍ତି । ମୁଁ କବିତା ଲେଖିଚ, ତୁମେ ସ୍ନେହରେ କହିଚ— "ତୁ ଭାବପ୍ରବଣ ନିର୍ବୋଧ ।"

ଆଜ 'ଅଗ୍ନିଶିଖା' ପ୍ରକାଶିତ । ତୁମେ ସବୁଠାରୁ ବେଶୀ ଆଜ ମୋ ଜୀବନରେ ଭାଗ ନେଉଚ । ତୁମର କଥା ମନେ ପଡୁଚି । ଯେଉଁଦିନ ସମସ୍ତେ ମତେ ଭୁଲ୍ ବୁଝିଥିଲେ, ମୋର ଆଗ୍ରହ ପାଇଁ ତୁମେହିଁ ସହାନୁଭୂତି ଦେଖେଇଥିଲ ଆଉ କହିଥିଲ "Have faith in time". ଜୀବନର ଏ ମୀମାଂସିତ ଯାତ୍ରାରେ ସେଇ ବିଶ୍ୱାସହିଁ ମୋର ପାଥେୟ । ମୋର ବିଶ୍ୱାସ ବିପଥଗାମୀ ନ ହେଉ- ତୁମର ଆଶିଷ ଚାହୁଁଚି । ତୁମରି ହାତରେ ତେଣୁ ଏ 'ଅଗ୍ନିଶିଖା' ଦେଉଚି ।

ଆଦରର

ନୀତ

## ଝଡ଼ରାତିର କବିତା

ଝଡ଼ ପୂର୍ବରୁ—

ଗତି ରୁଦ୍ଧ, ରୁଦ୍ଧ ଗତି
ଭଗ୍ନ ମାଡ଼ି ଏ ଶୀତଳ ରାତି
ହେଉ ତାର ଇତି ।
ଏଠି ଆଜ ଉଠିଚି ବତାସ,
ଆକାଶର ବଳୟରେ
ଅସ୍ଥିରତର ନାହିଁ ଅବକାଶ ।
ଉଦ୍‌ଭିନ୍ନ ପତ୍ରନି,
ହେ ଲାବଣ୍ୟବତି,
ଧୀରେ ଆସ, ଆସ ତୃହିଁ
ଏ ପଥରେ ଆଗ୍ନେୟ ଆହୁତ ।
ଏ ରାତିର ଓଦା ଓଦା ବକୁଳର ବେଦନା,
କପୋତର କ୍ରନ୍ଦନରେ ମିଶେ କେତେ ବେପଥୁ ଯାତନା ।
ମଣିଷର ଆଖି ଜଳେ ଧୋଇନାହିଁ
ଏବେ ବି ଏ ଅନ୍ଧକାର ନିଶା,
ଦିବାଖିରୁ ଉଲୁକର ଦେହ ମନେ
ଏ ଯେଉଁ ପିପାସା,
ମୂଲ୍ୟ ତାର ନାହିଁ,
ଜାଳନ୍ଧଅ ଆଲୋକର ବର୍ଣ୍ଣ ଯେତେ
ଯେତେ ଅବା ବିଜୁଳିର ହାସ,
ହେଉ ଇତି ତମସାର ଗ୍ରାସ ।

ଝିଙ୍କଡ଼ଟରେ—

ଏ ଝିଙ୍କଡ଼ରେ ଛୁନ୍ନ ପକ୍ଷ,
ମୋ ଦ୍ୱାରରୁ ଯାଅ କେଣେ
ହେ ଅସ୍ପୃଶ୍ୟ, ନିଶିଥ ପଥିକ ।
ରାତି ହେଉ ଭୋର,
ଉଦୟୁର ବାର୍ତ୍ତାଗାଇ ଭରତଆ ଦେଉ ସମାଚାର
ହେଉ ଇଷ୍ଟ ଆଦ୍ୟ ମଣିଷର ।
ଉରୁଚକ ପାନ୍ଥ ପ୍ରାଣତମ,
ମଣିଷକୁ ଡର ଏତେ
ସେଥିପାଇଁ କୁହ ଗୃହ—"ରାତି ମନୋରମ ।"
ଦ୍ୱିବସର ଅହଂତ୍ୱରେ ଖାଲି ପରିଚୟ,
କେତେ ଖିରୁ ମନସ୍ତାପ,
ଶପଥର ଖସ୍ତଡ଼ା ବଳୟ ।
ରାତି ଗାଏ ମନର-ବିଜୟ ।
ଏଇ ତାର ଶୁଭ ମାଙ୍ଗଳିକ
ଯାହା ପାଇଁ ଆୟୋଜନ,
ଏତେ ବାଧି
ଏତେ ଅଭିଷେକ,
ଏଇ ତାର ଆଦ୍ୟମ ଗୀତିକା,
ସତ୍ୟ ଆଉ କଣ୍ଟକିତ—ଦେହ ମନେ ଅନ୍ଧକାର ଘଷା
ଶୋଣିତ—ପରୀକ୍ଷା ।

ତା ୨୩ । ୩ । ୬୨
ରେଭେନ୍ସା କଲେଜ

# ପ୍ରଥମ ସୂଚନା

ବଜ୍ରରଡ଼,
ଘଡ଼ଘଡ଼,
ଆକାଶରେ ଅନଳର ବ୍ୟଥା,
କ୍ରୁଦ୍ଧ କଥା
ଗାଇ ଥରେ ଆଲୋକର ଗାଥା ।

ଆଜ ଯଦ୍ଦ ଆକାଶର
ଯେତେ କିଛି ଅଥୟ ଜିଜ୍ଞାସା,
ମୋ ହାତରେ ଚପି ହୋଇ
ପାଲଟନ୍ତା
ଗ୍ଲେଟ ଏକ ଫୁଲର ପିପାସା,
ତା' ହେଲେ ମୁଁ ଲୋଟିଯା'ନ୍ତି
ଶିଶୁସମ ଅଲଅଳ ଅତି,
ଖେଳନ୍ତି ମୁଁ ନିଆଁ ଧରି
ମୃତ୍ୟୁ ସାଥେ କରନ୍ତି ସଂପ୍ରୀତି ।

ଏ ଆକାଶ ମତେ କିନ୍ତୁ ଖ୍ରିତ ହଏ ଆଜ
ମୁଁ ସଂକୀର୍ଣ୍ଣ ଅବରୁଦ୍ଧ ପାରେନାହିଁ ଏଇ ଘେର ଭାଜ;
ଆକାଶର ପ୍ରକମ୍ପରେ ମାଡ଼ ଖୋଜ ପତଙ୍ଗ ନର୍ଣ୍ଣିତ,
ମୁଁ କିନ୍ତୁ ମୋ ପଞ୍ଜରେ ବାସୁହରା, ନିଟଳ, ବ୍ୟଥିତ;
ମଣିଷର ପ୍ରୀତି-ଲୁବ୍ଧ ମୁଁ ଦେଖୁଚି ମନ୍ଵଷାର ପ୍ରେତ ।

ଏ କା'ର କରୁଣ ସ୍ୱର, କରୁଣ ମୂର୍ଚ୍ଛନା,
ଅଥୟ ଜୀବନ ଯୁଦ୍ଧେ ହଜିଗଲା
କାହାର ଏ ସ୍ୱପ୍ନ କଲପନା ?

ଏ କଏସେ କଣ୍ଠେ ଦେଲା ଛୁରୀର ପାଲିସ୍
ଏଇ ତାର ଶେଷ ଦେଖା, ମୃତ୍ୟୁସାଥେ ସେ କଲା ସାଲିସ୍ ।

ଏ କିଏସେ ହସି ହସି ଗାଇଲା ସଂଗୀତ
ବିସ୍ମୃତିର ଆନପାନ୍ତୁ ଶେଷ ବିନ୍ଦୁ
କରି ନିଃଶେଷିତ,
ହସିଲା ଅଦ୍ଭୁତ ।

ତାକୁ ତୁମେ କହିଲ ପାଗଳ
ତୁମର ଟିପ୍ପଣୀ ହେଲା—ସେ ବୁଝିନି ଜୀବନର ମୂଲ ।

ତୁମେ ଭାବ ଅଛ ହୁସିଆର;
(କାରଣ ବଂଚିଚ ତୁମେ
ଅନେକଙ୍କ ଅସ୍ଥି ମାଂସେ
ତୁମ ଘର କରିଚ ତିଆରି)
କିନ୍ତୁ ତୁମେ ଜୀଇଁ ମଧ ମରିଚ ଆଗରୁ
ଯେଣୁ ତୁମେ ଅଟ ଦିବାନ୍ଧରୁ ।

ଆଜି ତେଣୁ କିଏ ମୃତ   କିଏସେ ଜୀବିତ
କିଏସେ ବିଷର ବ୍ୟାଧି   କିଏ ତୁମେ ଗୃହିତ ଅମୃତ
ସମୟର ନଥିପତ୍ରେ ସେ ହିସାବ ରହିବି ଲିଖିତ
ହେବ ତାର ବିଚାର ଉଚିତ ।

ଏଇତ ଶୁଭୁଚି ଖାଲି
ବଜ୍ର ରଡ଼ି,
ଘଡ଼ଘଡ଼ି,
ଏଇ ତାର ପ୍ରଥମ ସୂଚନା
କବି ତାର କରୁଚି ଅର୍ଚ୍ଚନା ।

ତା ୨୮ । ୪ । ୬୨
ରେଭେନ୍ସା କଲେଜ

## ରାସ୍ତା

ଶୁଭିଯାଏ ତୁମ ହସ, ପଦପାତ, ତୁମରି କାହାଣୀ,
ତୁମେ କ ଆସୁଚ ଆଜ ଛନ୍ଦ ତୋଳ ନୁପୂର ସିଞ୍ଜିଣୀ,
ଶିଥିଳ ବସନା ଅଙ୍ଗ, ଆଖି ମାଖି କଜ୍ଜଳ ବରଣ
ତୁମେ କ ତୋଳୁଛ କଣ୍ଠେ ସୃଜନର ମୁଗ୍‌ଧ ଆବାହନ ?

ମୁଁ ଗୁହୁଁଚ ଆବେଗରେ ବାରମ୍ବାର ବାତାୟନ ଧାରେ
ଯେତେ ଯାତ୍ରୀ ଗତାଗତ ଏ ରାସ୍ତାର ଉଦ୍‌ଦୃପ୍ତ ପଥରେ
ଖାରୁ କେତେ ଆମନ୍ତ୍ରଣ, କେତେ ଶଯ୍ୟା ପୁଷ୍ପିତ ସୁରଭି,
ସବୁକ ଛୁଟୁଚ ଆଜ ଏ ରାସ୍ତାରେ ଜୀବନ ସରଜ ?

ଏ ରାସ୍ତାର ଦୀର୍ଘପଥେ ସ୍ୱପ୍ନାଶିତ କେଉଁ ଅଶ୍ରୁତରୁ
ସଜଳ ଚଞ୍ଚଳ ଏଠି ଚେତନାର କେତେ ସମାରୋହ
ଅସ୍ତର ଟୌରିକ ମୋହ, ଉଦୟର ଗୌରବ ଶାଶ୍ୱତ,
ଏ ରାସ୍ତାର ବଭୂତରେ ଲଭାଇଚ ମରଣ ସଂକଟ ।

ଏ ରାସ୍ତାରେ ଯେଉଁଦନ ତୁମେ ଦେଲ ପ୍ରଥମ ପ୍ରକ୍ଷେପ
ଦେହରେ ଜଗାଇ ଝଡ଼, କବରୀରେ ବାତ୍ୟା ଅସହାୟ,
ଆଖିରେ ରଙ୍ଗର ଢେଉ, ମନତଟେ ଭ୍ରାନ୍ତ ଅକଳନ
ସେଦନ ଏ ରାସ୍ତା ଥିଲା ନଗ୍ଣଟିଆ, ଶୁଷ୍କ, ମରୁମୟ ।

ଆଉତ ଆସୁନା ତୁମେ ଏ ରାସ୍ତାରେ ଆସୁନା ଏଣିକ
ଏଠି ଆଜ କୋଳାହଳ ମଣିଷ ଓ ପଶୁର ସଂଶୟ,
ମୁଁ ଦେଖୁଚ ଅନ୍ଧକାର ଅସ୍ତିତ୍ୱରେ ତୁମକୁ ପରଖି
ଜାଗ୍ରତ ମୋ କାମନାର ଆଜ ସତେ ଏଇକ ବଳୟ ?

ମୁଁ ଗୁହୁଁଚୁ ଏ ରାସ୍ତାକୁ, ଏ ରାସ୍ତାତ ନୁହେଁ ଗୋଡ଼ି ମାଟି
ଏଠି ଖାଲି ସ୍ୱର୍ଣ୍ଣରେଣୁ, ରୋଧହୀନ ବନ୍ୟା ପ୍ରାଣବାନ,
ଏ ବାୟୁରେ କ ହିଲ୍ଲୋଳ, ସମାହିତ ପ୍ରଶାନ୍ତ ମାଳମା
ସବୁଆଡ଼େ ମୁଁ ଶୁଣୁଚ ତୁମ ରୂପ ମହିମାର ଗାନ ।

୧୭ । ୯ । ୭୧
ଷ୍ଟେସନ କଲୋନ

## ଅଗ୍ନିଶିଖା

ସେ ଫୁଲର ପାଖୁଡ଼ା ସବୁଠାରୁ ସୁନ୍ଦର,
ଯେଉଁଠି ସମସ୍ତ ଜ୍ୟୋତ୍ସ୍ନା ପୁଞ୍ଜୀଭୂତ,
ସେଠି ସକଳ ମଧୁର ସମାହାର
ସାଗରର ପ୍ରଶାନ୍ତ,
ପୁଣି ବତାସର କ୍ଷିପ୍ରତା ।
ତରଙ୍ଗ ଉପରେ ଚନ୍ଦ୍ରକାର ତରଙ୍ଗ ପରି
ସେଠି ଦେହ ଉପରେ ପ୍ରୀତିର ଲହଡ଼ି,
ମନ ଉପରେ ଆତ୍ମାର ବାହୁଡ଼ ।
ସେଇ ଅଗ୍ନିଶିଖା,
ରକ୍ତିମ ତାର ଅଧର ।
ସେ ନୁହେଁ ପଳାସର ପାଲସ୍
ରବୀନ୍ଦ୍ରର ପଦ୍ମବ 'ଅଗ୍ନିଶିଖା' ।
ସେ ପଥରେ ଆହୁରି ଅନେକ ପୁଷ୍ପର ବଥିକା
କେତେ ଆମନ୍ତ୍ରଣ, କେତେ ଆକର୍ଷଣ,
ଅନେକ ଫୁଲ ସୁନ୍ଦର ହୁଏତ,
ଆହୁରି ଅଧିକ ।
କିନ୍ତୁ ଦୂରର ପାହାଡ଼ ପରି
ସେ ସବୁ ଆଖିକୁ ସୁନ୍ଦର
ସେଠି ନାହିଁ ମମତାର ମାପକାଠି
ନିର୍ଭୁଲ ଏକକ ।
ଖାଲି ମପାମପିର ପ୍ରତିଯୋଗିତା,
ଇତିକଥା, ଖାଲି ଇତିକଥା ।
ଏଇ ଅଗ୍ନିଶିଖା
ଦେହ ଆଉ ମନରେ
ଖାଲି ଶୋଣିତର ଲେଖା—ଆକାଶର ଭାଷା

୧୦ । ୨ । ୭୨
ରେଭେନ୍ସା କଲେଜ

## ସ୍ୱପ୍ନ

ସେଦିନ ଆସିଲା ସିଏ ଲାଲ୍ ଶାଢ଼ୀ ରେଶମୀ ଦେହରେ
ମୋ ବେକରେ ହାତ ଛନ୍ଦି ମୋ କାନରେ ଚୁପ୍‌ଚୁପ୍ କହିଲା ଲଜ୍ଜାରେ
(ଅଳଙ୍କାର ଶାସ୍ତ୍ର ତାକୁ କହିପାରେ ପ୍ରଗଲ୍‌ଭ ନାୟିକା) ।
ସେ ମାଗିଲା ଏତେଟିକେ ବର୍ଷ୍ଣାସର ସମୁଦ୍ର କଣାରେ...
ଦେହର ଲହଡ଼ୀ ତଳୁ ପ୍ରାଗୈତିହାସିକ ତାର ତନୁର ନଗ୍ନତା,
ଆଦିମ ଆଖିର ଧାରୁ, କଜ୍ଜଳର କଳାଦାଗ ତଳୁ
ସେ ଖୁହିଁଲା; ହରିଣୀର ତା ଆଖିରେ ଜମିଲା ବରଫ,
ମୁଁ କହିଲି ମୋ ଜୀବନୁ ନିଭିଅଛୁ ସ୍ୱପ୍ନ କେଉଁକାଳୁ ।
ଗେରୁଆ ରଙ୍ଗର ସଜ, ତା ମୁହଁରେ ଧୂସର କୁହୁଡ଼ି
ଆଖିରେ ସାଗର ଲୁଣୀ, ଟପ୍ ଟପ୍ ସକାଳ କାକର,
ଅବା ସେ ଜଙ୍ଗଲ ରାସ୍ତା ଆଗେ ତାର ମରଣ ସଂକଟ
କବରୀ ଖୋସାରୁ ଖସି ଗୋଲାପର ହେଲା ବା କବର ।
ବାୟୁ ଅବା ଲୁଟି ନେଲା ତା ଦେହର ସମସ୍ତ ବାସନା
କୁଙ୍କୁମ ନିଭିଲା କ୍ଷଣେ ବଳୟରୁ ଖସିଲା କଙ୍କିଣୀ
ସୁନାର ନିର୍ମୋକ ତାର କ୍ଷଣେ ଖସି ପଡ଼ିଲା ମାଟିରେ
ସତେ ଅବା ଆସିଥିଲା ସ୍ୱପ୍ନସର ସେ ଏକ କାହାଣୀ ।
ତା ଦେହର ଯେତେ କ୍ଳାନ୍ତି ଭୋକ ଶୋଷ, ଖେଦ ଆଉ କୋହ,
ଅକର୍ମ ଶିଳାର ଦେହେ ବାରମ୍ବାର ହେଲା ପ୍ରତିହତ,
ମୁଁ କହିଲି ତୁମେ ନୁହଁ ବାରନାରୀ ଅର୍ଥର ମମତା
ମୋ ଜୀବନ ନୁହେଁ ମଧ୍ୟ ଶସ୍ତା ଏକ ସିନେମା ସଙ୍ଗୀତ ।
ତା ଗୁନ୍ତର ଜ୍ୟୋତ୍ସ୍ନାକୁଡ଼ ଅକସ୍ମାତ୍ ହେଲା ଅନ୍ଧକାର
ତା ସଭ୍ରର ଚନ୍ଦ୍ର ହେଲା ପ୍ରଭାହୀନ ଅକସ୍ମାତ୍ ଅସ୍ତ
ସୌରଭ ଫୁଲର ଦେହ, ଗନ୍ଧହୀନ ପଳାସ ଅଧର,
ଯାହାକିଛି ଆବରଣ ତା ମନରୁ ଗଲା କ୍ଷଣେ ଲୁଚି ।
ସିଏ ଅବା ଯକ୍ଷବାଳା ଆସିଥିଲା ଅଭିଶାପ ଆଣି
ସ୍ୱପ୍ନସର ହଜିଗଲା ସିଏ ଏକ ଧୂସର କାହାଣୀ ।

୭ । ୨ । ୭୨
ରେଭେନ୍‌ସା କଲେଜ

## ପାହାଡ଼

ଅସୁମାର ଆଘାତ ଦେଇ
ମୁଁ ତୁମକୁ କରୁଚି ପାହାଡ଼ ।
ଶେଷରେ—
ସବୁ ଆଘାତ ହିଁ ମୋର ଆଡ଼କୁ
ଫେରି ଆସିଚି ।
ଅସହ୍ୟ ତାର ଜ୍ୱାଳା,
ଅସହ୍ୟ ତାର ଉତ୍ପୀଡ଼ନ ।
ତୁମେ ନିର୍ବିକାର, ଅଚଂଚଳ, ସୁନ୍ଦର
ହେ ମୋର ଆତ୍ମାର ଶିଳାଦେହା,
ହେ ମୋର ଅନୁପମ ପ୍ରମୂର୍ତ୍ତି ମୂର୍ଚ୍ଛନା,
ମୋତେ କୋଳକୁ ନିଅ ।
ଆତୁର ନିବିଡ଼ ଭାବରେ
ମୁଁ ଆସଞ୍ଜନ ଚାହେଁ;
ଚାହେଁ ତୁମରି ଦେହରେ ଝରଣାର ପ୍ରବାହ,
ଯେଉଁଠି ମୁଁ ଏବଂ ମୋର ସମଗ୍ର ସତ୍ତା
ହେବ ପ୍ରତିବମ୍ବିତ ।
ମୋର ସ୍ପନ୍ଦନ କାତର ପ୍ରାଣର ପ୍ରତିଧ୍ୱନି
ମୁଁ ଶୁଣିବାକୁ ଚାହେଁ,
କେବଳ ତୁମରି ଠାରେ,
ତୁମରି ଠାରେ ।
ମୋ ଦେହର ସମସ୍ତ କ୍ଷତ
ତୁମରି ଶଙ୍କୁର ପୀଡ଼ା ନେଇ
ମତେ କରୁଚି ବ୍ୟସ୍ତ ଆଉ ବିବ୍ରତ ।
ହେ ପାହାଡ଼,
ହେ ସୁନ୍ଦର, ଅନୁପମ,
ମତେ ସନ୍ନିଧି ଦିଅ
ଟେକି ନିଅ ।

ଅନାଗତର ଉଦ୍ଧାର ରଗିଣୀରେ
ମତେ ଅଧୀର କର,
ମତେ କର ଉଦ୍‌ବେଳିତ ।
ମୁଁ ହଜିଯିବାକୁ ଚାହେଁ
କାରଣ ସେହିଁ ହଜିବାରେ
ମୋ ସ୍ମୃତିର ବର୍ଣ୍ଣାଢ୍ୟ ଇସ୍ତାହାର,
ପ୍ରୀତିର ସ୍ୱାକ୍ଷର ।

୨୦ । ୨ । ୭୨
ରେଭେନ୍‌ସା କଲେଜ

## ଅସତ୍ୟ ସହର

ଏ ସହରେ ଯାତ୍ରୀ ଭିଡ଼ କେତେ ସ୍ମୃତି, କେତେ ନାଗଜନ
ମୁହୂର୍ତ୍ତର ସାକ୍ଷାତରେ କେତେ ହର୍ଷ, ଅଶ୍ରୁର ସଂଶୟ;
କେତେ ମୁଗ୍‌ଧ ପ୍ରତାରଣା, ନଷ୍ଟ କେତେ ଅଭିସାର ରାତି
ତ୍ରିଯାମାର ଅନ୍ଧକାରେ କଳୁଷିତ ସୁବର୍ଣ୍ଣ ବଗ୍ରହ ।

ମନର ଆଲୁଅ ଧ୍ୱଂସ ଏ ଅନ୍ଧାରେ ହେ ଯାତ୍ରୀ ପଥୁକା
ତୁମେ କି ଦେଖିଚ କେବେ ଏ ସହରେ ଅନିର୍ବାଣ ଶିଖା
ଦେଖିଚ କି ପ୍ରିୟ ପାଇଁ ପ୍ରିୟାତାର ପ୍ରତୀକ୍ଷିତା କାହିଁ
ଅବା ଶତ ସ୍ୱପ୍ନ ନେଇ ବରନିଏ ନୂତନ ପରୀକ୍ଷା ?

ଆଜି ମୁଁ ଭାବୁଚି ବସି ଏ ସହର ଅସତ୍ୟ ସହର
ଏ ରାସ୍ତାରେ ଏତେ ଯାନ, ଏତେ ପ୍ରାଣ, ପ୍ରଣୟ ଜିଜ୍ଞାସା,
ସବୁର ଉପାନ୍ତ ଇତି ଶୁଣି ଶୁଣି ଏ ସହର ସ୍ତବ୍‌ଧ
ନିର୍ଜ୍ଜନରେ କେତେ ଦାହ, କେତେ ଉଷ୍ଣ ଦେହର ପିପାସା ।

ଏ ସହର ପ୍ରୀତି ଦିଏ, ଦିଏ ଖଣ୍ଡିତ ମୁହୂର୍ତ୍ତ ଅନ୍ତରେ
ତୁମେ କି ପାଇବ ପାନ୍ଥ ଭଲତାର ଏ ନଗ୍ନ ରୂପରେ ?

୧ । ୭ । ୭୧
ସତ୍ୟଭାମା ପୁର

## ଆହୁତି

ଏ ଆତ୍ମାର ଦୃଷ୍ଟିତଳେ ନିଜକୁ ମୁଁ ମାରି ବହୁବାର,
ଆଜି ସାଜି ଅଚ୍ଛି ବୁଦ୍ଧ, ମୋ ବିଗତ ବୁଦ୍ଧି ନ୍ୟାସ ନେଇ
ଆପଣା ଜାଲରେ ହଜି ହେତୁହୀନ ତୃପ୍ତି ଅବଗାହେ
ମୁଁ ଆଜି ନିର୍ବାଣ ଗୃହେଁ ଅତୀତରେ ଅଭିଶାପ ଦେଇ ।

ମୋ ମନର ନିଷ୍ଠାତଳେ ଗରଳର ଗ୍ରାସ ଅବିରତ
ମତେ କରେ ପଥଭ୍ରାନ୍ତ, ଲୁଟିନିଏ ମୋ ସତ୍ତା-ଆଲୋକ;
ମୁଁ ଯେତେ ନିଜରେ ଝାଡ଼େ, ମୂଲ୍ୟ ତା'ର ସମୁଦ୍ରରେ ହଜେ
ନିଜକୁ ଦୁର୍ବଳ ଭାବି ମାନିନିଏ ବ୍ୟକ୍ତି ଅଭିକ୍ଷେପ ।

ଆଖିର ସଂଯୋଗ ତଳେ ବିଚାରକ ଆସନରେ ବସି
ଶଞ୍ଚାଣର ନଖ ଦେଖେ, ଦେଖେନି ତ କପୋତ କାତର;
ସଂକୁଚିତ ଆଖିତଳେ ଜଳଉଠେ ନିଆଁର ପରୀକ୍ଷା
କାହାପାଇଁ ନିଜ ମାଂସ କାଟିଦିଏ ରାଜା ଉଶୀନର ?

ଯେଉଁ ଦୁର୍ଗ ଭାଙ୍ଗିଗଲା, ମୋ ଦେହର ରକ୍ତଧାର ଦେଇ
ମୁଁ ତାହାକୁ ଗଢିଥିଲି; ଆଜି କିନ୍ତୁ ସେହି ସ୍ତୂପତଳେ,
ଧ୍ୱଂସର ଚରାଳ ଠେକ ମୋ ଶ୍ରମର ପରାଜୟ ଗାଏ
ବ୍ୟକ୍ତି-ଅହମିକା ଭୁଲି ବିସ୍ମୃତିର ବିସ୍ମିତ ପ୍ରହରେ ।

ତେଣୁ ଆଜି ମୂଲ୍ୟହୀନ ଅତୀତର ଉପକ୍ରମଣିକା
ହସାଏ ଭାବନା ତଳେ ଶସ୍ତା ଯେତେ ସୁନ୍ଦର ତାଲିକା
ଧରିନିଅ ସ୍ମୃତି ନାହିଁ, ନାହିଁ ମୋର ଆଶା ଓ କାମନା;
ପ୍ରୀତିର ମୁଁ ଶେଷାହୂତି; ଅବାଞ୍ଛିତ ନିଷ୍ଠୁର ଯାତନା,
ମୋ ଆତ୍ମାର ରୁଷ୍ଟ କୋଳାହଳ
ଆଜି ତୁମେ ଶୁଣିଯାଅ ପରିପନ୍ଥୀ ପଙ୍ଗପାଳ ଦଳ
ମୁଁ ଆଜି ସାଜିଛି ବୁଦ୍ଧ; ଲାଞ୍ଛନାର ରୁଷ୍ଟ ଅବତାର ।

୧ ଫେବୃୟାରୀ ୧୯୭୦
ଗରାଇ ଶାସନ

# ଧ୍ୱଂସର କଥା କହ

"ଧ୍ୱଂସର କଥା କହ
ସୃଷ୍ଟିର ଛବି ଦେଖି ଦେଖି ବହୁ ହେଲଣି ଦୁର୍ବିଷହ ।"
ଏଇ ମଣିଷର ହଶ୍ରାମହୀନ
ଜୀବନ ଯାତ୍ରା ଦେଖି,
ସ୍ତିମିତ ଏ ମୋର ଆଖି,
ସୀମିତ ମୃତ୍ୟୁ ସେପାରେ ମାରଇ ହାଇ
ତଥାପି ମଣିଷ-ଯାତ୍ରାର ଶେଷ ନାହିଁ ।
ଏଇ ବନ୍ଧୁର ପଥେ,
ପୂର୍ବ ପୁରୁଷ ଯେଉଁମାନେ ଗଲେ ଚାଲି,
ଯାତ୍ରା ପଥର ସୀମାନ୍ତ ପରେ
ଶୁଣାଇଲେ ଖାଲି
ସାବଧାନ କେତେ ବାଣୀ;
କହିଲେ ଏ ସଂସାର,
ମାୟାର ଖେଳଘର,
ସତର୍କ ହୁଅ ଅନାଗତ ଆରେ ଶିଶୁ,
ଯାହା ବା କହିଲେ ଶଙ୍କର, ବୁଦ୍ଧ, ମହମ୍ମଦ ଓ ଯୀଶୁ,
ଜନ୍ମ ଏ ସାରହୀନ,
କାମନାରେ ନାଶି ଲଭିବୁରେ ନିର୍ବାଣ,
ସ୍ୱର୍ଗୀୟ ଅନୁପମ ।
ବୁଝିଲା କ ସତେ ଏମାନ୍ତି ଦେଇକ ମୂଲ
ଏ ମଣିଷ କଆଁ ସ୍ୱାର୍ଥରେ ମଜଗୁଲ ?
କାମନାରେ ଶେଷନାହିଁ
ପ୍ରିୟରେ ଭୁଲି ତା ପ୍ରିୟା ଧାଉଁଅଛି ନୂତନ ପ୍ରଣୟ ପାଇଁ
ନବବଧୂ କାର ବୁକୁର ତପତ ଶ୍ୱାସ
ଦେହରେ ଭିଜାଇ ଝୁରୁଛ ଅତୀତ ରାସ ।
ହସି ହସି କେତେ କହୁଛ ଚଟୁଳ କଥା
ତୁମେ ମୋର ସବୁ ହେ ମୋର ବୁକୁର ସାଥୀ

ସୀମନ୍ତରେ ମୋ ତୁମର ଟିକୁନ
ସିନ୍ଦୂର ଦାଉ ଦାଉ,
ତୁମର ଆଗରେ ଜୀବନ ମୋ ଭୁଲିଯାଉ ।
ନିଜର ପାଗଲ୍ ପଣାକୁ ଦେଖେଇ କଏ ବା କହୁଛି ହସି,
ପ୍ରତାରଣା କରି କେତ ସେ ଆସିଛ ଭୁଲାଇ ଆସିଛ ଖସି,
ସାମ୍ୟବାଦର ନାମରେ ଏ ଯେତେ ମିଥ୍ୟାର କାରବାର
ଗଣତନ୍ତ୍ରର ପରଓ୍ୱାନା ତଳେ ଅସତ୍ୟ, ଅପଚୁର;
ମଣିଷ ମଣୁଚି, ବିପୁଳ କୀର୍ତ୍ତି ଏଇଟା ମହତ ଯଶ,
ଯୋଗ୍ୟତମ ହେଇ ବଞ୍ଚୁଚି ଏଠି ରୁଧିର କରୁଚି ଗ୍ରାସ ।
ଦୁଇଟି ଯୋଜନା ଶେଷ ହୋଇ ଏବେ ତୃଷ୍ଣାପୂର ହେଲ୍ ସୁର
ବୁଝିଲ୍ କି କଏ ରାସ୍ତା ତଳର ଶିଶୁର କରୁଣ ସ୍ୱର ?
ବୁଝିଲ୍ କି ସତେ ମଣିଷ ପ୍ରାଣର ଉଚ୍ଛ୍ୱାସ ଆକୁଳତା
ବଞ୍ଚିବା ପାଇଁ ବିଜ୍ଞାପନ ଏ ଖାଲି ତୃଷ୍ଣା ମିଛ କଥା ।
ବିଶ୍ୱାସ ଆଜ ମଣିଷର ନାଇଁ
ପ୍ରଣୟରେ ନାହିଁ ପ୍ରାଣ କୁହାକୁହି
ଶପଥ-ବନ୍ଧନ ଆଜ ଏ ମଣିଷ ଜାତି
ବଞ୍ଚିବା ପାଇଁ ଶୁଣାଅନା ବାଣୀ
ମୃତ୍ୟୁର ଦାଅ ହଳାହଳ ଆଣି
ଅନ୍ଧକାର ଏ ପେଷାରୁ ତାହାର ସେଇ ହେବ ନିଷ୍କୃତି ।

ଅନ୍ଧାର ରାତି ଅସୂର୍ଯ୍ୟାରେ ମାତି
ତେଣୁ ଆଜି ସଖା
ଧ୍ୱଂସର କଥା କହ
ସୃଷ୍ଟିର ଲୀଳା ଦେଖି ଦେଖି ମତେ ଲାଗିଲାଣି ଦୁର୍ବହ ।

ତା ୨୪ । ୧୦ । ୭୧
ଷ୍ଟେସନ କଲେଜ

## ନଗ୍ରଜନା

ଦେବତାରେ ଯାହା ଦେଇ ମୁଁ ପାରେନି
 ଦେଉଚ ତା' ପ୍ରିୟଜନେ
ପ୍ରିୟଜନେ ଯାହା ଦେଇମୁଁ ପାରେନି
 ଦେଉଚ ଦେବତା କରେ ।
ମୋ ଆଖିରେ ସତେ ଦେବତା ମଣିଷ
 ତଫାତ୍ ତ ମୋଟେ ନାଇଁ
ତେଣୁ ମୁଁ ଦେଖୁଚ ଦେବତାରେ ପ୍ରିୟ
 ପ୍ରିୟରେ ଦେବତା ତହିଁ ।

ଅଶ୍ରୁ ଆଳାପେ ଦେବତାରେ କେତେ
 ଡାକଚ ଅନ୍ଧକାରେ
ପାଶେ ମୋର ଉଭା ଦେବତା ପ୍ରତିଭୂ
 ପ୍ରିୟା ମୋ ହର୍ଷ ଭରେ ।
ପ୍ରାଣେ ମୋ ଲୁଚାଇ ଦେବତା ଭାବନା
 ନାଶିଚ ଦୁଃଖ ରାଶି,
ତାଆର କୋଳରେ ମଥା ରଖି ମୋର
 ପାଇଚ ପୂର୍ଣ୍ଣ ଶଶୀ ।

ଜନନୀରେ ପୂଜି ପ୍ରୀତିରେ ସୋହାଗେ
 ହାରିଚ ଚନ୍ତା କେତେ
ଅନ୍ତରେ ତାର ଦେବତାର ଭାବ
 ଦେଖିଚ ଆଲୋକ ଯେତେ,
 ପ୍ରେମର ଗନ୍ଧାଘର,
ନିତି ନିତି ଲୁଟି ତଥାପି ସରେନି
 ସ୍ନେହର ଫଲ୍‌ଗୁ ଧାର୍ ।

ତାଳ ମୋ ଅଶ୍ରୁ ଆଶା ଅଭିମାନ
 ଅଗ୍ରଜ ପଦତଳେ
ଲଭି ସ୍ନେହରାଶି ସଂକୋଚ କେତେ
 ଅନୁଜର ପ୍ରୀତି ଧାରେ ।

ଆଜି ମୁଁ ଭାବୁଛ ଧନ ଗର୍ବୀ ମୁଁ
ଦେବତା ଆଶୀର୍ବାଦେ
ଯେଣୁ ମୁଁ ପାଇଛ ଅମୃତ ସୁଖ
ମାଟିର ଅହଂକାରେ ।

ଦେବତାର ଯେତେ ନିସର୍ଗଦାନ ମାଟିର ପର୍ବ ଧରେ
ସବୁଠାରୁ ବଳି ପାଇଛ ଶାନ୍ତ ସେବାର ପଙ୍କତଳେ;
ମାଟିର ମଣିଷ ସବୁ ଦେବତାର
ଆନନ୍ଦ ଅଶ୍ରୁ ନେଇ
ମତେ ଶିଖେଇଛ ଦେବତାର ପୂଜା ସ୍ୱର୍ଗ ସେନେହ ଦେଇ ।
ମଣିଷର ପ୍ରୀତି ହେଲେ
କେତେ ଜନମର ସଂଚୟ ନେଇ ପୂଜାହଏ ଦେବତାରେ ।

(ପ୍ରଥମ ପଦଟି ଗୋଟିଏ ବୈଷ୍ଣବ କବିତାର ମର୍ମବାଣୀ)

ତା ୨୦ । ୪ । ୭୦
ରେଭେନ୍ସା କଲେଜ

## ଐକ୍ୟ

ମୋର ଏ ଦେହରେ ଉଷ୍ଣତା ଆସେ;
ଅହେତୁକ ବସ୍ତୁପୁରେ
ପୂର୍ଣ୍ଣକରେ ମୋର ପାଥେୟ,
ତା କେବଳ ଗୋଟିଏ ଦେହ ଆଉ ମନର ଉଷ୍ଣତାରେ
ମିଶିଯିବାକୁ, ହଜିଯିବାକୁ ।

ସେଠି ପୁଣି ଆସିବ ଶୀତଳତା
ହିମ ଶୀତଳ ନିଷ୍କ୍ରାନ୍ତ ସେଇ ଦେହରେ ମିଶିଯିବାକୁ ।

ବରଫର ଅଣୁରେ ବ ଥାଏ କଂପନ,
ସେ ହେଉଛି ମରଣର
ସ୍ୱାଦ୍ୟ ଆଉ ସୁନ୍ଦର ।

ହେ ମୋର ସମସ୍ତ ସତ୍ତ୍ୱର ଅବ୍ୟକ୍ତ ପ୍ରତିଧ୍ୱନି,
ହେ ମୋର ସମଗ୍ର ସ୍ଥିତିର ଅକୁତୋଭ ଇସ୍ତାହାର,
ମୋର ଜୀବନ ଚଷକ ପୂର୍ଣ୍ଣକର
ବିଶ୍ୱାସରେ
ଆଶ୍ୱାସରେ ।

ମୋର ଦେହ ଆଉ ମନର ସ୍ପନ୍ଦନ ନିଅ,
ନିଅ ମୋର ସ୍ଥିତିର କଂପନ,
ଯାହା ଆଜି ବଳୀନ,
ଏକ ମଧ୍ୟରେ ବହୁରେ
ପୁଣି ବହୁ ମଧ୍ୟରେ ମାତ୍ର ଏକରେ ।

୨୦ । ୨ ।୭୨
ରେଭେନ୍‌ସା କଲେଜ

## ପ୍ରଥମ କାହାଣୀ

କଜଳ ସଜଳ ଆଖି, ଯେବୁ ଅତି, ଅତି ସଂକୁଚିତ
ଅତି ଧୀରେ କଥା କହେ, ଚୁପ୍‌ଚୁପ୍ ଶୁଭେନା ତା କଥା;
ଅବୋଧ ଆଖିର ଭାଷା, ଯୁକ୍ତି ନାହିଁ ଅନୁଭବ ମାତ୍ର
ତଥାପି ତା ପାଇଁ କିଆଁ ପ୍ରତୀକ୍ଷାରେ ଏତେ ମର୍ମ ବ୍ୟଥା ?

ସବୁଦିନେ ଦେଖେ ତାକୁ ମନଭରି ଦେଖିପାରେ ନାହିଁ;
ଦର୍ଶନେ କାତର ହୁଏ, ଅଦର୍ଶନେ ଭାବେ ଅନିବାର;
ମୋ ମନର କାକ୍ଷାତଳେ ଯେତେ ଅବା କରେ ଅନ୍ୱେଷଣ,
ମୁଁ ଦେଖେ ପାଖରେ ଅତି, ବ୍ୟବଧାନ ଲକ୍ଷ ଯୋଜନର ।

ମାୟାପରି ମନେହୁଏ, ସ୍ୱପ୍ନପରି ଚଞ୍ଚଳ ବା କେବେ
ସତ୍ୟପରି ମହୀୟାନ, ଧୂମ୍ରପରି ଶୁଭ୍ର ସଉରଭ,
ସ୍ରୋତପରି ଛଳଛଳ, ପୁଷ୍ପସରି ସୁନ୍ଦର ମହମ,
ମୋ ଦୃଷ୍ଟି ଦର୍ଶନ ପାଇଁ ଯାହାକଛି ନୂତନ ବୈଭବ ।

ମୁଁ ଭାବେ କହିବି କଥା ଅଲଅଲି ଜେମାର କାହାଣୀ
ଶନୋଟି ତେଉର ଛକ, ଅନାହୂତ କେ ରାଜକୁମାର,
ଆସେକ ଘୋଡ଼ାରେ ବସି, ଦୂରୁ ଶୁଭେ ଟାପୁ ଛନ୍ଦମୟ;
ପାଖରେ ମୁଁ ମୂକ ହୁଏ, ନୀରବ ମୋ କଣ୍ଠ ବାବଦୂକ ।

ଆମେ ଦୁହେଁ ମୂକ ହେଉ ମୂକ ହୁଏ ଏ ସହର ରାତି
କଥା କହୁ ମନ କଥା, ଭାଷାହୀନ ବୁଝୁ ଦୁଇଜଣ,
ନୀରବରେ ହସୁ କେତେ, କାନ୍ଦୁ ଅବା କେବେ ମନେ ମନେ
ଅକସ୍ମାତ୍ ଦେଖାହେଲେ ହସି କହୁ ବିଭକ୍ତ ବଚନ ।

ତା ୧୦ । ୪ । ୬୦
ରେଭେନ୍‌ସା କଲେଜ

## ସନ୍ଧାନ

ମୋ ଯାତ୍ରାର ଗନ୍ତପଥେ ହେ ଗତାୟୁ କିଏ ତୁମେ ଉଭା
ନିଖିଳର ସ୍ପନ୍ଦନରେ ନାହିଁ ମୋର ପ୍ରତୀକ୍ଷା ବାରତା,
ଏଇ ସୂର୍ଯ୍ୟ, ଏଇ ଚନ୍ଦ୍ର, ଏ ଆକାଶ ଅବା ଅକୂପାର
ମୋ ବେଗରୁ ଲୁଟିନିଅନ୍ତି ପ୍ରାଣଭରି ଜୀବନ ମମତା ।

ମୋ ଆଖିରୁ ଲୁହ ନେଇ ଏ ସମୁଦ୍ର ହେଲା ଏତେ ନୀଳ;
ମୋ ଆଖିରୁ ଜ୍ୟୋତି ନେଇ ସୂର୍ଯ୍ୟ ହେଲା ମରୀଚିମାଳିନୀ
ମୋ ଦେହରୁ ଗନ୍ଧଲୁଟି ଏ ଆକାଶ ହେଲା ଆମୋଦିତ ।
ଅଧରରୁ ହାସ ନେଇ ଚନ୍ଦ୍ର ହେଲା ପ୍ରୀତି କୁତୁକିନୀ ।

ଆଦିମ ନିଃଶ୍ୱାସ ମୋର ମିଶିଗଲା ପଥର ଦେହରେ
ମଳୟର ଅହଂକାର ମୋ ଦେହରେ ହେଲା ପ୍ରତିହତ,
ମୋ ଆତ୍ମାର ନିର୍ଯ୍ୟାସରେ ଆଜି ଖାଲି ଗନ୍ଧ ଅନୁପମ
ବସ୍ତୁନ୍ତର ବସ୍ତୁସ୍ତରେ ମୁଁ ଭୁଲଚି ମୋ ସ୍ଥିତି ସୀମିତ ।

ମୁ ତେଣୁ ଶୁଣୁଚି ଆଜ ଶବ୍ଦହୀନ ଏ ଯେଉଁ ଆହ୍ୱାନ
ମୋର ଏଇ ଘଟାନ୍ତର ଖୋଜବୁଲେ ତାହାର ସନ୍ଧାନ ।

୪ । ୧୨ । ୭୧
ରେଭେନ୍‌ସା କଲେଜ

## କାମନା

ସମୁଦ୍ରର ଲୁଣିଜଳ, ଭୟଙ୍କର ଉତ୍ତାଳ ଲହରୀ
ଅଶାନ୍ତ ମନର ତେଜ, ଢେଉହୀନ ବାଲିର ସରଣୀ;
ଜୀବନର ହିସାବରେ ଏ ସମୁଦ୍ର ଅତି ଦର୍ପଭରା
ଅନ୍ତରେ ଛପାଇ ରଖି ଅଗଣିତ ପ୍ରୀତିଳ-କାହାଣୀ ।

ଏ ସମୁଦ୍ର ଭୟ ଦିଏ, ଫଙ୍ଗି ଦିଏ, କେବେ ବା ଅଧୀରେ
ତା ଅପୂର୍ବ ଅନୁଗାମୀ ସଇତରେ ବକ୍ଷେ ତୋଳି ଧରେ
କେବେ ଅବା କ୍ରୋଧଭରେ ଫୁଲି ଉଠେ ରୋଷ କଷାୟିତ
ସତ୍ୟ ଏ ତା ପରିଚିତ, ହୃଦୟର ବେଭାର ମହତ ।

ମୋ ବ୍ୟକ୍ତିର ସତ୍ତତଳେ ସମୁଦ୍ରର ଏଇ ପ୍ରତିକୃତି
ଭିନ୍ନ କରୁ ମୋ ସ୍ୱରୂପ ଯାହାକିଛି ରୁଦ୍ର ଅସୁନ୍ଦର;
ମୋ ଅନ୍ତରେ ଥାଉ କିନ୍ତୁ ସୀମାହୀନ ଅବୋଧ ପ୍ରଶାନ୍ତି
ସକଳର ପୂଣ୍ୟ ଆଶେ ଚୂର୍ଣ୍ଣ କରି ଭେଦର ପ୍ରାଚୀର !

ତା ଅନନ୍ତ ମହିମାର ପ୍ରତିଛବି ଫୁଟୁ ମୋ ଅନ୍ତରେ
ଶିଶୁପରି ଖିରୁ ଅତି, ମାଆପରି ଅତି ସ୍ନେହମୟୀ,
ପ୍ରିୟାପରି ଆତ୍ମ-ହରା, ସଖାପରି ମୁଗ୍ଧ ଯାବାସାଥୀ,
ସବୁର ପରୀକ୍ଷା ତଳେ ନଭେ ଯହିଁ ଖିତର ପ୍ରଚ୍ଛିତ !

ମୋତେ ଦିଅ ହେ ଦେବତା; ଦିଅ ଆଜ ଦିଅ ଏଇ ବର
ସବୁର ହୃଦୟ ମଧ୍ୟେ ମୁଁ ବଞ୍ଚିବ ଅମ୍ଲାନ ଅକ୍ଷର ।

ତା ୨୬ । ୩ । ୭୧
ସତ୍ୟଭାମାପୁର

# ଦ୍ୱନ୍ଦ୍ୱ

ଆକାଶରେ ହସେ ଚନ୍ଦ୍ର, ତଳେ ହସେ ଶିଖା ପ୍ରଜ୍ୱଳିତ
ମୁଁ ଏଇ ଜାଳୁଛି ମୋର ଗୋଡ଼ ଗୋଟେ ରୂପ-ଅସୁରୁଣୀ
ମୁଁ ଏଇ ଧରୁଛି ମୋର ସନ୍ତାନକୁ ଆଗ୍ରହେ କୋଳରେ
ମଣିଷ ମାଉଁସ ଲୋଭ ଗୁଡ଼ ମଧ ତଥାପି ଗୁଡ଼ନ୍ତି ।

ଧନର ଶପଥ ତଳେ ଅଧନର ଯେତେ ନିର୍ଯାତନା
ମନର ମୈନାକ ପରେ ଆଶଙ୍କାର ଯେତେ ଅଭିସାର
ସବୁର ପ୍ରଶାନ୍ତି ନେଇଁ ମୁଁ ଦେଖଇ ତୀବ୍ର ଆଦ୍ୱମତା
ମଣିଷ ଓ ଅସୁରର ମୁଗ୍ଧ ଏକ ବ୍ୟସ୍ତ ବ୍ୟଭିଚ୍ଛର ।

ନିଜକୁ ନିଜେ ବି ବୁଝି, ବୁଝି ମଧ ଆତ୍ମର ଅବୁଝା,
ସ୍ଥିତିର ଆଗ୍ରହ ତଳେ ଦୁଃସ୍ଥିତିର ବାତାୟନ ପାଶେ
ଏଇ ଯେ ପବନ ଛୁଟେ, ଏଇ ଯେଉଁ ଗନ୍ଧ ଆସେ ବହି
ମାଟିର ସଂସ୍କାର ନାମେ ମଣିଷକୁ ତିଳ ତିଳ ଗ୍ରାସେ ।

ତେଣୁ ମୋ ମନର ଦ୍ୱନ୍ଦ୍ୱେ ପାରିବ କି ଏତେ ମୂଲ୍ୟଦେଇ
ଯାହା ମୁଁ ଶପଥ କଲି ଆଗାମୀରେ ସ୍ୱାଗତ ଜଣାଇ ?

୨୦ । ୬ । ୭୦
ଗସ୍ତଇ ଶାସନ

## ମୁଁ ଆସିଚ ନବବର୍ଷା

ମୁଁ ଆସିଚ ନବବର୍ଷା,
ମୋ ଦେହରେ ଭର ଜଗତ ଜନର ତୃଷା,
ଆଲୋକ ଅନଳେଁ ଗର୍ଭ ମୋ ଚୀର ଚୀର
ଯୁଗ ଯୁଗାନ୍ତର ଭୟଂକର ମୁଁ
ବଜ୍ର ଶପଥ ଧର ।

ସୃଷ୍ଟିର ମୋର କଳ୍ପିତ ପଥ ଗୁଡ଼ି,
ମୁଁ ଆସିଚ ଆଜ ଅନ୍ଧକାରରେ ମାଡ଼ି,
ଅସମୟେ ମୋର ରୁଦ୍ର ଅଶନି ତୋଳ
ମୁଁ ସାଜିଚ ଆଜ ଧ୍ୱଂସର ମହାକାଳୀ ।

ମୋ ହାତରେ ଏ ଯେ ଖର୍ପର ଶିଳାଘାତ
କରକା ପାତରେ କରବ ନଷ୍ଟ ହତ,
ମୁଁ ଯେଣୁ ବୁଝିଚ ଗତ ଯେତେ ମୋର ଦାନ
ପ୍ରବଞ୍ଚନାର ହୋମାନଳେ ତାର
ଆଜ ହୁଏ ଅବସାନ ।

ମୁଁ ଯେଣୁ ଶୁଣୁଚି କୋଟି କଣ୍ଠର ଗୀତି
ଆଲୋକ ଦଅ ହେ ହେଉ ଦୁର୍ବହ ଇତି,
ବଂଚିବା ଏଠି ଛଳନାର ଖାଲି କଥା
ଏ ପଥରେ ଖାଲି ଅସରା ଅଶ୍ରୁ ବ୍ୟଥା ।

ଜଳସିଂଚିତ ରଜଣୀଃଳା ଏ ପୃଥ୍ୱୀ
ଶ୍ୱଦାର୍ଶିତ ହେଲା, ଫଳପ୍ରସୂ ହେଲା ନିତି,
ଲୁଣ୍ଠନ ହେଲା, ହେଲା ଅନ୍ୟାୟ ଘୋର,
ତେଣୁ ଏ ମାଟିରୁ ଲୁଟିନେବ ଯେତେ
ଶସ୍ୟର ଉପହାର ।

ଆଜ ଆସିଚ ମୁଁ ଅହେନେ ମତ୍ତଭର
ମୋ କଣ୍ଠରେ ଖାଲି ଧ୍ୱଂସର ଗାନ
ନିଃଶ୍ୱାସ ଖରତର ।

ଶୁଣ ଆରେ ଗୋପ ବାସି,
କୃଷ୍ଣ ତ ନାହାଁ କଏ ସେ ରୋଧିବ
ଏ ପଥ ମୋ ଧ୍ୱଂସ ନାଶୀ ?

ସାତଦିନ ନୁହେଁ ସାତ୍ୟୁଗ ଧରି
ଘୋଟିବ ଅନ୍ଧକାର ।

ମଣିଷର ଯେତେ ହଜାୟୁ ଦର୍ପ
ଅସୂୟା ଅହଂକାର,
ଦେବତାର ଚୁର୍‌ମାର୍ ।

ତେଣୁ ଆସିଛି ମୁଁ
ନବୀନ ବର୍ଷା
ଧ୍ୱଂସ ଭୈରବ ଘୋର ।

୧୦ । ୩ । ୬୨
ରେଭେନ୍‌ସା କଲେଜ

(ତୁଳସୀ ଦାସଙ୍କ 'ମୁଁ ଆସିଛି ନବବର୍ଷା' ପଢ଼ି ସାରିବା ପରେ)

## ସାରଥି

ହାତ ମୋର ହାତେ ରଖ, ଚୁପ୍ ଚୁପ୍
ଆଖି ରଖ ଆଖିପରେ ମୋର;
ତା'ପରେ ସତ କୁହ ଜ୍ବଳକ ପାଅନା
ତୁମେ ମୋ ମନ ଖିଆଲ,
ମତେ ଯଦି ଭଲପାଅ, ମୋ ଅଜ୍ଞାତ
ଅର୍ଥହୀନ ଯେତେ ଘଟାନ୍ତର
ସବୁର ବଦଳେ ତୁମେ ନିଅ କିଣି
ଦେଇ ଖାଲି ପ୍ରଣୟର ମୂଲ ।
ଯାହାକୁ ଭେଟିଲି ମୁହିଁ, ପାଇଲି ବା
ପ୍ରାଣଭରି ଭଲ,
ଜୀବନର ପ୍ରଭାତରେ ତାଆ ସାଥେ
ଯେତେ ହସ ଖେଳ,,
କୁଟିଳ କାଳର ହୃଦେ ମୁଁ ଯଦି
ହେଲି ପଥହରା,
ପଥିକୃତ୍, ନିଅ ଟୋକି ବାଝିଦେଇ
ଆଲୋକ ଅସରା ।
ମୋତେ ଧର ସନ୍ଧ୍ୟାରେ, ଝରିପଡ଼େ
ବିଚ୍ଛିନ୍ନ ପାଖୁଡ଼ା,
ମୋ ଆତ୍ମାର କୋଳାହଳେ ଲୋପ ପାଏ
ଏଇ ମୋର ସତ୍ତା,
ଆଖିରେ ଅନ୍ଧାର ଢୋଟେ ଚଉଦିଗେ
ଖାଲି ଛନ୍ଦଲୀଳା,
ମୋ ମାଟିର ସଦ୍ମ ଲଦି ମୁଁ ଗୃହୁଁଛି
ପୁରୁଷାର୍ଥ ଖେଳ।
କେଉଁ ଦିନ ଲଗିଲି ବା ଏ ଦେହରେ
ଅଂଗର ବିକାର
ଅନାବିଳ ମୋ ଶିଶୁରେ ଦେଲା କିଏ
କାମନା ସଂକଟ

କିଏ ବା କହିଲା କଥା ଅର୍ଥହୀନ
ଅଳୀକ କାହାଣୀ
ଜାଙ୍ଗଳିକ କଲା ମୁଗ୍ଧ କଣ୍ଠେ ତୋଳି
ପଦ୍ମତୋଳା ବାଣୀ ।
ସ୍ୱର୍ଗର ଆଲୋକ ରେଖା ଛିନ୍ନ ହେଲା
ମୋ ଅନ୍ଧାର ଘରେ,
ଜାନ୍ତବ କାମନା ଗନ୍ଧେ ମୋତେ କଲା
ଉଦ୍‌ଭ୍ରାନ୍ତ, ଉଦ୍‌ବେଳ,
ଅସ୍ତିତ୍ୱ ମୋ ହଜାଇଲା, ବିବେକର
ଦଂଶନ ବା ଯେତେ
ନିର୍ଯ୍ୟାସ ମୋ ଲୁପ୍ତ ହେଲା, ଗନ୍ଧହୀନ
ହେଲା ଆମ୍ରଫୁଲ ।
—ଏ ମହକ ମୁଁ ଗୁହ୍ମ ଛି ଆଡ଼ଥରେ
ଖୋଲାଇ ଅଧୀରେ
ସୃଷ୍ଟିରେ କରିବ ମୁଗ୍ଧ ମୁଁ ଫେରିବି
ଭଗ୍ନଜାନୁ ଅନ୍ତ,
ସେ ସାରଥୀ ସ୍ୱର୍ଣ୍ଣ ପ୍ରାଣେ ଦେଉ ଆଜି
ଶୀତଳ ପ୍ରଲେପ
ବିକ୍ଷତ ମୋ ଏ ଦେହରୁ ନିଭୁ
ରକ୍ତ-ବହ୍ନି-ଅନୁଭୂତି ।

ତା ୪ । ୯ । ୬୧
ସତ୍ୟଭାମାପୁର

## ପ୍ରତିଫଳନ

ତୁମ ମୁହେଁ ସଦା ନାଇଁ ଅମୃତ ହାସ,
କ୍ଷୁଦ୍ର କଆଁ ମୋର ସ୍ମୃତି ତଳେ ଜାଗେ ତ୍ରାସ,
ତୁମର ମୁହଁରେ ଦୁଃଖର ଘନଚ୍ଛାୟା
ଦେଖିଲେ କାହିଁକି ଆହତ ହୁଏ ମୋ ହିଆ ?

ତୁମର ଆଖିରୁ ସକାଳ କାକର ସର
ଅଶ୍ରୁ ଝରିଲେ ବୁକୁ ମୋ ଉଠଇ ଥର;
ତୁମ ମୁହେଁ ସଦା ଦେଖେ ମୁଁ ହର୍ଷ ଏତେ
କଂଚିତ ମଣେ ସରଗ ସପନ ଯେତେ ।

ଆତ୍ମାର ସାଥେ ଏକ ଗ୍ରନ୍ଥନ ଆଜ
ପ୍ରତିଫଳନ ତା ପ୍ରାଣେ ପ୍ରାଣେ ଯାଏ ମଜ୍ଜି;
ଏକଇ ପରାଣ ଝୁରଇ ଅପର ଲାଗି
ଆମାବାସ୍ୟାର ତିମିର ରାତ୍ରି ଜାଗି ।

ଚିନ୍ମୟ ଏଇ ହୃଦୟର ଅଭିଳାଷ
ପୂର୍ଣ୍ଣ କରୁ ମୋ ଅଧୀର ଜୀବନ କୋଷ,
ତୁମର ମୁହଁରେ ସରାଗ କଣିକା ଖୋଜ
ଅନାଗତ ପାଇଁ ଆଶାରେ ଯାଏ ମୁଁ ହଜି ।

୬ । ୧୨ । ୭୧
ରେଭେନ୍ସା କଲେଜ

## ପ୍ରେତ

ଧରିନିଅ ଚିତାପରେ ତୁମେ ହେବ ସମାଧି ସ୍ମୃତିର
ତୁମ ମୃତ୍ୟୁ ପଶଖାରେ ମୁଁ ଘୂରିବ ଗନ୍ଧି ଚିର ଖାରୁ,
ଆଘ୍ରାଣେ ମୁଁ ତୋଳିନେବ ସବୁକିଛି ଜୀବିତ ବାସନା
ଆପାତତଃ ବିଶ୍ୱାସରେ ହରାଇବ ପ୍ରତ୍ୟୟ ମନରୁ ।

ପ୍ରେତ ତୁମେ ଦେଖିଥିବ, ଶୁଣିଥିବ ଭୂତର କାହାଣୀ,
ଅତି ଭୟଂକର ସିଏ, ହାଡ଼ ଆଉ କଂକାଳ ଛଳନା
ତୁମେ ଯେଣୁ ସେଇପରି ମୋତେ ଦିଅ ଆତଙ୍କ ଅସୀମ,
ଆମ ସ୍ମୃତି ବିସ୍ମୃତିରେ ଟାଳିଦେଇ ଭୟ ଓ କାମନା ।

ମୁଁ କିନ୍ତୁ ଆଦର କରେ ସେଇ ରୂପ କାରଣ ତା ନାଇଁ
ମୁଁ ବୁଝିଚି ତା ମନର ମୁଗ୍ଧ କେତେ ବାଞ୍ଛା ବଶମ୍ବଦ,
ମତେ ସେ ଦେଲେ ବି ଭୟ ମୁଁ ତାହାରେ କରଇ ଆହ୍ୱାନ,
ସିଏ ଯେଣୁ ଗାଇବୁଲେ ଅବିନାଶୀ ମୋ ଆତ୍ମା ସମ୍ବାଦ ।

୧୬ । ୭ । ୬୧
ରେଭେନ୍ସା କଲେଜ

ଉତ୍‌ତ୍ରାୟଣ

ମୋ ହସରୁ କାଣିଚିଏ, ମୋ ଆନନ୍ଦ ବିନ୍ଦୁ ମାନ ନେଇ
ତା'ପରେ ଗଢ଼ିବ ତୁମେ ସୌଧ ଏକ ବଉଦ ଛୁଆଇଁ ।
ମୋ ଆଖିର ସିନ୍ଧୁ ତଳୁ ତିରଙ୍ଗର ମଥା ପିଟି ପିଟି,
ମୁଁ ଗୃହିଁବ ସନ୍ତର୍ପଣେ ତୋଳି ଧୀରେ ମୋର ଉର୍ଦ୍ଧ୍ୱ ଦୃଷ୍ଟି ।

ଦେଖିବ ମୁଁ ଗ୍ରହ କେତେ ଘୂରୁଚନ୍ତି କେତେ ତାରା ସତେ,
ଆକାଶରେ ହସୁଚନ୍ତି କେତେ କାଳ, ଯୁଗ କଳ୍ପମାନ;
ବଢ଼ାଇବ ହାତ ମୋର ଆସ ଚନ୍ଦ ତେଇଁ ମୋର କୋଳେ
ରକ୍ତରେ ନଥିବ ଦ୍ୟୁତି, କଣ୍ଠ ହେବ ନିର୍ବେଦ, ମନ୍ତ୍ରନ ।

ଆଖିର ଯାତନା ତଳେ ତୋଳିବ ମୁଁ ବୈଦିକ ଓଁକାର
ହସିବ ମାଟିର ଧରା ଶୁଣିବ ସେ ବୌଦ୍ଧିକ ଝଂକାର
ଭାଙ୍ଗିଯିବ ସୌଧତଳ ଆକାଶଟା କାନ୍ଦ ବାହୁନିବ
ପାହ୍ନ୍ତବତ ପରୁ ହସି ପାରା ଗୋଟି କେଉଁ ଉଡ଼ିଯିବ ।

୨୭ । ୧୧ । ୬୦
ଷ୍ଟେସନ କଲୋନି

## ଛିନ୍ନଗୀତ

ସିଏ ଯଦି କହିଥାନ୍ତା ଆସିବାକୁ
ନିଶ୍ଚେ ଆସିଥାନ୍ତା,
ତା ଯାବାର ଖିନ୍ନପଥେ
ଥାଉପଛେ ଯେତେ କ୍ରୂର, କୁଟିଳ ଅହନ୍ତା,
ତଥାପି ସେ ମୋ ଆଖିର କରୁଣ ବାରତା
ଅବହେଳେ ପାଷାଣ୍ଡିକର କଠୋର ହନ୍ତା ?
ବକୁଳର ପୁଷ୍ପସର
ମୋ ଆଖିରୁ ବହିଲେ ଲୋତକ;
ତା ଅଂଚଳ ଆର୍ଦ୍ର ହୁଏ, ସିକ୍ତ ହୁଏ ବସନ୍ତତା ମୁଖ ।
ମୋ କଣ୍ଠରୁ ମଗ୍ନ ହେଲେ ବାବଦୂକ ଭାଷା,
ସିଏ ଅବା ମଣୁଥିଲା
ଛିନ୍ନ ହେଲା ଜୀବନର ସକଳ ପ୍ରତ୍ୟାଶା ।
ମୋ ନିବେଦ ଓଷ୍ଠେ ସ୍ପର୍ଶ ଦେଇ,
ଚେତନାର ଅସ୍ତିତ୍ୱରେ ତଡ଼ିତ୍‌ର ବେଦନା ଜଗାଇ
ସିଏ ଗାଉଥିଲା—
ଉଦୟ ପଥର ବାର୍ତ୍ତା,
କହୁଥିଲା—ଜୀବନ ଓ ଯୌବନର କଥା ।
ସିଏ ନାହିଁ, ହାୟ ଆଜ ନାହିଁ,
ତା' ପାଇଁ ଝୁରେ ଆଜ
ବନର କପୋତୀ ସହ
ଅଶ୍ରୁନାବ ବାହି,
ସେ ଅତୀତ କାହିଁ ?
ମୁଁ ନୁହେଁ କେହି ତାର
ଭୁଛାପର, ଦୂର ସାତପର,
ତଥାପି ସେ କଲା ଆପଣାର ।
କଣ୍ଠେ ତୋଳି ଦରଦ ରାଗିଣୀ
ଶୁଣାଇଲା, ଶୁଣୁଥିଲା ମୋ ପ୍ରାଣ କାହାଣୀ ।

ଗୃହଦ୍ୱାରେ ଗର୍ଜୁଥିଲା ବର୍ଷା ଓ ବତାସ
ଘଂଗି ଅବା ପଡ଼ୁଥିଲା ଉର୍ଦ୍ଧ୍ୱ ନୀଳ ଅଶାନ୍ତ ଆକାଶ,
କର୍ଷାତୁର ମତ୍ତ ବଶାରଦ
ଶୁଣାଇଲେ କେତେ ଅହଂବାଦ;
ସିଏ କିନ୍ତୁ ଆସୁଥିଲା,
ପବର ମର୍ମର ସାଥେ
ପଦଗୃଞ୍ଜ ନୁପୂର ନିକ୍ୱଣ,
ତା ଆଗମେ ହେଉଥିଲେ
ଏ ବନର ପକ୍ଷୀ କଳସ୍ୱନ ।
ସିଏତ ଆସେନି ଆଜ,
ଏ ଦେହରୁ ଗନ୍ଧ ନେଇ, ଲୋଭ ନେଇ
ସିଏ ଛୁଟେ ଏ ବାୟୁରେ ଜୀବନ ସରଞ୍ଜ;
ମୋ ଆତ୍ମାର ବଶମ୍ୱଦ ସାଜ ।
ଆଜ ତେଣୁ ଜନପ୍ରିର୍ବୀ ସମ,
ଏ ଦେହରେ ଜଡ଼ାଇ ମୁଁ
ଯାହାକଛି ଅତ୍ୟାଚାର-ବ୍ୟଥିତ, ନିର୍ମମ
ଗାଉଛି ମୁଁ ଛନ୍ଦ ଏ ମୋ ଗୀତ,.
ଏଇ ମୋର ସୃଷ୍ଟି
ଧ୍ୱଂସ ହେଉ—ଏ ଅସୂୟା, ଅହଂକାର
ଯାହାପାଇଁ ଭୁଲିଲ ସମଷ୍ଟି
ଭୁଲିବାହିଁ ହେଉ ମୋ ଆଶ୍ୱସ୍ତି ।

୨ । ୧୦ । ୬୧
ଷ୍ଟେସନ କଲୋନୀ

# କାହାଣୀ

ଯେଉଁଦିନ ଥିଲି ସେ ବାଳା ଦରଫୁଟନ୍ତି ଗୋଲାପ କଳିକା,
ଦୋହଲି ଦୋହଲି ରଙ୍ଗ ଛୁଉଁଥିଲି ତା ଦେହ ବଥିକା,
ତଳେ ଥିଲି ଶୀର୍ଣ୍ଣମାଟି, ଉର୍ଦ୍ଧ୍ୱେ ଥିଲି ଆକାଶର ନୀଳ,
ଅକୁତୋଭ ଜୀବନଟା ସେ କଣୋଗ୍ୟ ମଣୁଥିଲି ଭଲ ।

ଖେଳୁଥିଲି ଲୁଚକାଳି, ବୋହୂଟ୍ରେଶ, ଆଉ କେତେ ଖେଳ,
କାହାଘର ବୋହୂ ସାଜ ରୁଷୁଥିଲି ପ୍ରଣୟ ପାଗଳ,
ଅଭିମାନେ ମୁହଁ ନଦ କହୁଥିଲି ରୋଷଭରା କଥା,
ସେ ଜୀବନ ଶେଷ ହେଲା, ଶେଷହେଲା ସେଦିନ କବିତା ।

ପଣ୍ୟବାହୀ ଜାହାଜରେ କେଉଁ ଏକ ଅଜଣା ନାବିକ,
ଆସିଲା ସେ ଦେଶେ ବକ ତା ସଂଚିତ ସମ୍ବଳ, ସଉକ,
କହିଲା କାହାଣୀ କେତେ—ରଜାରାଣୀ, ବୁଢ଼ୀ ଅସୁରୁଣୀ,
ଗୋଟିଏ ବ୍ୟଥାର "ହୁଁ" ଶୁଣୁଥିଲି କଣୋଗ୍ୟ ମଉନି ।
ଏକଇ ସକାଳେ ଉଠି ସେ ଦେଖିଲା ହଜିଚ ବସନ୍ତ,
ଆଖିରେ ଲାଗିଚ କଳା କେତେ ଜାଦୁ କୁହୁକ ଅଂଜନ,
ଦେହରେ ଅସହ୍ୟ ତେଉ, ବାହୁବାନ୍ଧି ବଚନ ବଳାସ
କେନ୍ଦ୍ରିତ ମନରେ ଉଡ଼ ଅନାବନା ଆକାଶୀ—ବଶ୍ୱାସ ।

× × ×

ସେଇ ସେ ଗୋଟିଏ ମୋହ ପ୍ରାଣପାଇଁ ଗୋଟିଏ ପୁଲକ,
ଦେହରେ କରିଲା ସ୍ଥିର, ସ୍ଥିର କଲା ଆଖିର ପଲକ,
ମୁହଁରେ ନିବେଦ ଭାଷା, ଅବୟବେ ସ୍ପର୍ଶ ଆକୁଳତା
ବସ୍ମିତ ଜୈବିକ ତୃଷା—ଅର୍ଘ୍ୟ ଦେଲା ତରୁଣୀ ସାଇତା ।

୭ । ୯ । ୬୧
ରେଭେନ୍ସା କଲେଜ

## ବସ୍ତୁ ଓ ମନ

ଏ ଏକ ନିଷ୍ଠୁର ସତ୍ୟ
ବସ୍ତୁ ଜଗତର,
କଷ୍ଟ ଅତି ଗଢ଼ିବା ସୁନ୍ଦର ।
କେତେ ଶ୍ରମ, କ୍ଲାନ୍ତି କେତେ,
କେତେ ଘର୍ମ ବିନ୍ଦୁ,
ଶୋଣିତର ସିନ୍ଧୁ,
କେତେ ଯୁଦ୍ଧ, କେତେ କଳପନା,
ବଂଚିବାର ଶପଥ ସାଧନା,
କିନ୍ତୁ ଅଧିକ ସହଜ,
ଭାଙ୍ଗିଦେବା—ସେ ଆଟୋପ ସାଜ ।

କିନ୍ତୁ ମନର ଜଗତ
ସତ୍ୟତାର ଅଟେ ବିପରୀତ;
ଅତି ଅଳ୍ପ ଶ୍ରମ ଲୋଡ଼ା
ମୁହୂର୍ତ୍ତେ ମାତ୍ର,
ଗଢ଼ିବାକୁ ସୌଧ ସୁମହତ ।
ଭାଙ୍ଗିବାକୁ ଲୋଡ଼ା କିନ୍ତୁ
ସମଗ୍ର ଜୀବନ
ଭୁଲିବାକୁ ସ୍ମୃତି ଅକ୍ଷରହୀନ,
ରକ୍ତ ଲେଖା—ମନର ମିଳନ ।

ଏପ୍ରିଲ, ୧୯୬୧
ସତ୍ୟଭାମାପୁର

## ହେ ତରୁଣି;

ହେ ତରୁଣି,
କହିକ ପାରିବ ଖୋଲି
ତୁମ ପାଶେ ମୋ ଆତ୍ମ କାହାଣୀ ?

ତୁମର ଅଶେଷ ପ୍ରଶ୍ନ
ମୁଗ୍ଧ କେତେ ସବୁଜ ଜିଜ୍ଞାସା,
ଛଳ ଛଳ ଅର୍ଥ-ହସ-ମିଶା,
ମୋ ମନର ଶୂନ୍ୟତାରେ
ମାପି ମାପି
କହି କ ପାରିବ ଖୋଲି
ମୋ ମନର ଶୋଣିତ-ଟିପ୍ପଣୀ,
ଭଲପାଏ ତୁମକୁ ମଉନୀ ?
ତୁମର ସେ ପ୍ରଶ୍ନ ଅସୁମାର,
ଏଇ ମୋର ଆତ୍ମା-ଅଙ୍ଗୀକାର
ଗୋଟିଏ ଉତ୍ତର—
ଆତ୍ମାହୁତି ଦେଇଥିଲି ତୁମର ସକାଶେ,
ଅନାମିତ ସେ ସଂଜର
ଏକ ଅବକାଶେ
ନିଷ୍ଠୁର ବିଶ୍ୱାସେ ।

ତୁମେ କି ତା' ମୂଲ୍ୟ ଦେବ
ଦେବ ତାରେ ଅର୍ଥ ଓ ଗୌରବ ?
ମୋ ପିଞ୍ଜରା ଥରାଇ ଯେ
ଉଠିଥିଲା—ଗୁରୁ ଦୀର୍ଘଶ୍ୱାସ
ତୁମେ ଦେବ ତାହାରେ ଆଶ୍ୱାସ ?
ହସି ହସି କହିବ ସହଜେ
ଦିନର କ୍ଳାନ୍ତ ଆଲୋକ
ମିଶେ ଯଥା
ପ୍ରଭଞ୍ଜନ ସଂଜେ

ତୁମର ଏ ମନ ପ୍ରତିଜ୍ଞବ
ଝଲସି ଉଠିଲା ଖାଲି
ମୋ ଦର୍ପଣେ
ଅନୁକ୍ଷଣେ
ଆଲୋକର ବିଶ୍ରାଳୀ ସରଜି ?

ଯାହା କିଛି ଦୁରଲଭ୍ୟ
ତାହାପାଇଁ ଏତେ ଉପଗୃର,
କେଉଁଦିନ ଗୃଲିଯିବ
ଅକସ୍ମାତେ ନୀରବ ନିଷ୍ଠୁର;
କହିବନି ପଦଟିଏ କଥା,
ସମସ୍ତର ସାୟାହ୍ନରେ ଗ୍ରାସେ ଯଥା
ଅନ୍ଧକାର ବ୍ୟଥା ।

ତଥାପି ମୋ ଆତ୍ମା ଝର୍ଥ ତଟେ
ଅକସ୍ମାତ ଏ ଯାବା ସଂକଟେ
ତୁମେ ଯଦି କେବେ ଦୂରୁ ଗୃହିଁ
ପଗୃରିବ ମର୍ମେ ଅଶ୍ରୁ ବହି,
ସବୁବେଳେ ପାଇବ ଉତ୍ତର
ସ୍ୱପ୍ନହୀନ, ନିର୍ବେଦ, ଗଭୀର
"ତୁମକୁ ସେ ସ୍ନେହ ଥିଲା ଦେଇ
ଅବାଞ୍ଛିତ ପରଜଣେ କେହି
ପ୍ରତିଦାନେ ନ ହୋଇ ଆଶାୟୀ ।"

ଜାନୁୟାରି, ୧୯୬୧
ଗରାଇଶାସନ

## ଶେଷ ଜହ୍ନ—

ପିଲାଟି ବେଳୁ ଯାହା ସହିତ ହସି ଖେଳ ବଢ଼ି ଆସିଚ, କେତେ ରାଗ ରୋଷ, ମାନ ଅଭିମାନ ଯାହାକୁ ନେଇ ହଜିଚ ବିସ୍ମୃତିର ବାଲୁଚରରେ ଆଜ ସେଇ ମୋର ଏକମାତ୍ର ଅଗ୍ରଜ ନନାଙ୍କ କଥା ମନେ ପଡୁଚ । ଆସନ୍ତା ବର୍ଷ କୁମାର ପୂର୍ଣ୍ଣିମା ଆସିବ । ମୁଁ କିନ୍ତୁ ତାଙ୍କ ସହିତ ଭଲ ଶାଢ଼ୀପାଇଁ କଳି କରିବାକୁ ପାଖରେ ନଥିବି । ତାଙ୍କର ସ୍ମୃତିରେ ଜହ୍ନଟା ଫିକା ହେବ । ସେ ଥିବେ କେତେ ଦୂରରେ ।

ମୋ କବିତାରେ ମୋର ଏକାନ୍ତ ଆପଣାର ଭାବନା ଦେଖି ସେ ହସିଚନ୍ତି, ପୁଣି ନବୁଝିଲା ଦୁଃଖରେ ଅନେକ ସମୟରେ ମୁହଁ ଶୁଖେଇଚନ୍ତି । ଜୀବନର ସବୁ କ୍ଳାନ୍ତି, ଦୁଃଖ, ଦୁର୍ଦ୍ଦଶାକୁ ସେ ଯେପରି ସହଜରେ ହସି ଫାଙ୍କି ଦେଇ ପାରନ୍ତି-ମୁଁ କିନ୍ତୁ ତା କରି ନପାରି ତାର ଟିପ୍ପଣୀ ରଖେ । ସେ ଚିଡ଼ନ୍ତି, ମତେ ବୁଝେଇବାକୁ ଚେଷ୍ଟା କରନ୍ତି ।

ସେଇଥିନେଇ ପାଣ୍ଡୁଲିପି ତାଙ୍କ ପାଖରୁ ଲୁଚେଇଚ । କିନ୍ତୁ 'ଶେଷଜହ୍ନ'କୁ ଲୁଚେଇ ପାରୁନି । କାରଣ ଆକାଶରେ ଥାଇ ସେଦିନ ସେ ତାଙ୍କର ସ୍ମୃତିକୁ ମନ୍ଥନ କରିବ । ସେ ମନେ ମନେ କେତେ ଖୋଜିବେ ।

ତାଙ୍କରି ହାତରେ ମୋର 'ଶେଷଜହ୍ନ'

ସ୍ନେହର
ପ୍ରଭା

# ବୋଉ

ବୋଉ ନିଶ୍ଚେ ଭାବୁଥିବ ଝିଅ କାହିଁ ଆସିଲାନି ଆଜ,
କିବା ଅସୁବିଧା ହେଲା, ଇଚ୍ଛାକରି ଆସି ପାରିଲାନି,
ଉପବାସ ରହୁଛି କି, ଦୁଃଖି କଥା କା' ଆଗେ କହୁଛି
ଦେହ କଣ ଭଲନାହିଁ, ସେଥିଲାଗି ଆସି ପାରିଲାନି ।

କଲେଜର ପାଠପଢ଼ା ଅବା ବେଶୀ କଠିନ ପଡ଼ୁଛି
ସେଥିଲାଗି ଆସିନାହିଁ ମନମାରି ଶୋଇଛି ଗୁମାନେ;
ତକଆଟା ଓଦାକରି ଅଳଅଳୀ କାନ୍ଦୁଛି କି ଆଉ
ଲୁହ କିଏ ପୋଛିବାକୁ ନଥିବତ ତାର ସନ୍ନିଧାନେ ।

ଷୋଳବର୍ଷ ବନ୍ଧନ ମୋହ ମାୟା କାଟାଇ ନପାରି
କୋହ ତୋର ଉଠୁଥିବ ଝିଅ ଆଜ ଦୂରରେ ରହୁଛି,
ଏକୁଟିଆ ଶୋଇବାକୁ ରାତିରେ ତ ଡରୁଥିବ କେତେ,
କିଏବା ବୁଝିବ କହ ଯେତେ କଷ୍ଟ ମୁଁ ଏଠି ସହୁଛି ।

ମରିଗଲେ ଏଇଠାରେ କେହି ପଦେ କହିବେନି ଆହା,
ଦିନାଦିନ ନଖାଇଲେ କେହି ଏଠି ପଚାରି ଯିବେନି,
ପରିହାସ ଛଳେ ଏଠି ଅନ୍ତରରେ କରିବେ ଆହତ,
ସତରେ ଲୋ ବୋଉ ଏଠି କେହିଜଣେ ନାହିଁ ଆପଣାର ।

ତୋ ସେନେହ ମମତାକୁ ଏଠି ଖାଲି ଝୁରିବା ହିଁ ସାର,
ମନ ଟିକେ ଦୁଃଖ ହେଲେ ତୋ ଶରଧା ବେଶୀ ମନେ ପଡ଼େ;
ତୋ ପାଖେ ରହିବା ସୁଖ ଏ ଜୀବନେ ଆସିବନି ଆଉ
ଭାବିତ ପାରେନି ଖାଲି ମନତଳେ ଅବସାଦ ଭରେ ।

ତୁହି ନିଶ୍ଚେ ଭାବୁଥିବୁ ଝିଅ ଅବା ଅଭିମାନ କଲା...
ସେ ଲାଗି ଆସିଲା ନାହିଁ, କିନ୍ତୁ ବୋଉ ପାରିବୁନି ବୁଝି,
ମନ ଏଠି ପରାଧୀନ, କର୍ତ୍ତବ୍ୟର ନିଷ୍ଠୁର ତାଡ଼ନେ
ଏ ଜୀବନ ତିକ୍ତ ଅତି, ସବୁ ସ୍ମୃତି ମିଶିଛି ସପନେ ।

ତା ୨୨ । ୭ । ୭୧
ବୁର୍ଲାନିବାସ

## ସ୍ୱୟମ୍ବର ?

"ଚମ୍ପାବତୀ ଗୋ—ଶୁଣିଚ କି ତୁମେ ରତ୍ନମାଳୀର ନାମ ?"
ଆବେଗେ ପଚାରେ ବୌଦ୍ଧ ଭିକ୍ଷୁ କଣ୍ଠରେ ଅଭିମାନ—

ଅବନ୍ତୀପୁର ନଗର ସୀମାରେ ସହଜ ସକାଳ ବେଳେ
ଚମ୍ପାବତୀ ସେ ପରିଚାରିକାର ଭ୍ରୂ କମ୍ପାଇ ଦେଲେ
"ରତ୍ନମାଳୀ ତ ଆମ ଜେମାମଣି ସ୍ୱୟମ୍ବର ଯେ ଆଜ
ସୁବାସ ପୁଷ୍ପେ ଯାଉଚ ତାଙ୍କ କବରୀ ଦେବ ମୁଁ ସାଜ ।"

ଭିକ୍ଷୁର ମୁଖେ ସହସା ଘୋଟିଲା ଅଦିନ ବଉଦ ଛାଇ
ନୟନେ ଫୁଟିଲା ଗମ୍ଭୀର ଭାବ, ଚମ୍ପାବତୀକୁ ଚାହିଁ—
ପଚାରିଲା "ସତ, ରଖିବ ଗୋଟିଏ ଅନୁରୋଧ ମୋର କହ—!"
ଚମ୍ପାବତୀର ଚଞ୍ଚଳ ପଦ, ବିଳମ୍ବ ଦୁରୁବକ୍ଷ ।

ବ୍ୟସ୍ତ ଆଶାରେ ଭିକ୍ଷୁ କହିଲା "ଅନୁରୋଧ ମୋର ନେବ—
ଏଇ ପାଖୁଡ଼ାଟି, ଜେମା କବରୀରେ ନିଶ୍ଚୟ ସଜାଇବ ।"

ପରିଚାରିକାର ପ୍ରସାରିତ କରେ ଉପହାର ଥାପିଦେଇ
କ୍ଷିପ୍ର ଗତିରେ ଭିକ୍ଷୁ ଫେରିଲା ଅଶେଷ ବେଦନା ନେଇ ।

ବିସ୍ମୟ-ଭୋର ରମଣୀ ଦେଖିଲା—କେତକୀ ପାଖୁଡ଼ା ଏକ
ଶୁଷ୍କ ବୁକେ ତା' କଜ୍ଜଳେ ଲେଖା 'ଭିକ୍ଷୁ ମୁଁ ଜ୍ଞାନଦେବ ।'

× × × × ×

ସ୍ୱର୍ଣ୍ଣ ଖଚିତ କକ୍ଷର ତଳେ ଲକ୍ଷେ ଫୁଲର ବାସ
କବରୀ ସଜାଉ ରାଜକନ୍ୟାର ଅଧରେ ମନ୍ଦହାସ ।
"ଜେମା; ଦେଖିଲ ଏ ଶୁଷ୍କ ପାଖୁଡ଼ା—" ହସିଲା ଚମ୍ପାବତୀ
ରତ୍ନମାଳୀର ଚକ୍ଷୁ ନଇଁଲା, ବୁକୁରେ ବେଦନା ଅତି ।
ଥର ଥର ଥର ନାସିକା ଥରିଲା, ଅଶ୍ରୁ ପଡ଼ିଲା ଝରି
ଚକିତା ସନ୍ତ୍ରସ୍ତା ପରିଚାରୀ କହେ ଭୟ ବିସ୍ମୟ ଭରି
"ନଗର ପ୍ରାନ୍ତେ ଭିକ୍ଷୁ ସେ ଜଣେ ଦେଇଗଲେ ମତେ ଯା'ଙ୍କୁ
ଅନୁନୟ କରି କହିଥିଲେ ତୁମ କବରୀ ସଜାଇବାକୁ ।"

"କି କହୁ ରମ୍ଭା ?" ଗର୍ଜି ଉଠିଲେ ଅଧୀରେ ରତ୍ନମାଳୀ
କ୍ଷଣକରେ ପୁଣି କଂପିଲା ବୁକୁ ବସିଲେ କାତରେ ଭାଳି ।

ସହସା କପାଳେ ଥୋପି ଥୋପି ହୋଇ ଜମିଲା ଘର୍ମ ବିନ୍ଦୁ
ପାଶୋରି ଅଜ୍ଞାତ ମନ୍ଥନ କଲା ହୃଦୟ ଗଭୀର-ସିନ୍ଧୁ ।

× × ×

ସେ ଏକ ସନ୍ଧ୍ୟା ଆସିଥିଲା ଥରେ ରାଜଉଦ୍ୟାନେ ଭରି
ମାଟିପରେ କେତେ ଶୋଇ ପଡ଼ିଥିଲା ଗଙ୍ଗଶିଉଳି ଝରି;

ସେଇ ଶେଯ ପରି ରାଜ କନ୍ୟାର ଶାୟିତ ଅଙ୍ଗଲତା
ଥରି ଉଠୁଥିଲା—ଗୃହପାଖେ ତାର ଅସୀମ ନିର୍ଜନତା ।

ମଞ୍ଜୁଳ କା'ର ଚରଣ ଧ୍ୱନି ଶୁଭିଲା କୁମାରୀ କାନେ
ଚକିତେ ଚମକି ଦେଖିଲା ସେ ଏକ ଭିକ୍ଷୁର ଅଭିଯାନେ—
ଗୈରିକ ବାସ ଗୌର ତନୁରେ, ମସ୍ତକ କେଶ ହୀନ
ଅଶେଷ ପ୍ରଶ୍ନ ରାଜକନ୍ୟାର କଣ୍ଠରେ ହେଲା ଲୀନ— ।

ବୌଦ୍ଧ ଭିକ୍ଷୁ—ତାଙ୍କର କିଆଁ ଉଦ୍ୟାନେ ଆଗମନ ?
ବିଶେଷତଃ ଏଥି କରନ୍ତି ବିହାର ଅନ୍ତଃପୁରର ଜନ ।

ସଂଭ୍ରମଭରେ ପ୍ରଣିପାତ କରି ସଧୀରେ କହିଲା ବାଳୀ—
"କିମ୍ପତ ସେବା କରି ପାରିବକି ଜେମା ମୁଁ ରତ୍ନମାଳୀ ?"

ଭିକ୍ଷୁ ହୃଦୟୁ ଅତଳ ଗଭୀରୁ ଉଠିଲା ଦୀର୍ଘଶ୍ୱାସ
"କାଲି ମୁଁ ଯାଉଚି ତ୍ୟାଗକରି ଏଇ ରାଜ୍ୟ ଅତିଥି ବାସ
ଆସିଥିଲି ତେଣୁ ରାଜ ଉଦ୍ୟାନେ ଭ୍ରମଣର ଅଭିପ୍ରାୟେ"
ତୃପ୍ତ ମନରେ ରାଜଜେମା ପାଶେ ବୌଦ୍ଧ ଭିକ୍ଷୁ କହେ ।

"ଅବନ୍ତୀପୁର ଉଦ୍ୟାନେ ଦେବ ! ବିସ୍ମୟ କି ଦେଖିଲେ ?"
ଜେମାର ପ୍ରଶ୍ନେ ବୌଦ୍ଧ ଭିକ୍ଷୁ ମଗ୍ନତା ଭୁଟାଇଲେ—
"ଦେଖୁଚି ବିଷମ ବିସ୍ମୟ ଜେମା—ଉଦ୍ୟାନେ ଏତେ ଫୁଲ
କେମିତି ହେଉନି ଜେମା କବରୀର କେତକୀ ପାଖୁଡ଼ା ତୁଲ ।"

ରତ୍ନମାଳୀର ନୟନେ ନିଜର ନୟନ ନିବେଶ କରି
ଉତ୍ତର ଦେଲା ସେ ଧ୍ୱନ ଭିକ୍ଷୁ କଂଠେ ପୁଲକ ଭରି ।

ଜେମା ବନ୍ଦନରେ ପ୍ରଭାତ-ରବିର ରକ୍ତିମ ଆଭା ଫୁଟେ
ବିଲୋକି ଭିକ୍ଷୁ ଅନ୍ତର ତଳେ ଲକ୍ଷ ଜୁଆର ଛୁଟେ ।
"ତୁମ ପଦତଳେ ବୌଦ୍ଧ ଭିକ୍ଷୁ ଜ୍ଞାନ ଦେବର ଏ ଭିକ୍ଷା—
କବରୀର ଏକ କେତକୀ ପାଖୁଡ଼ା"—ଜେମାର ଓଷ୍ଠଶିଖା
କମ୍ପି ଉଠିଲା, କହିବାର କଥା ସମାଧି ଲଭିଲା ମୋହେ
ବୌଦ୍ଧ ଭିକ୍ଷୁ ଅଞ୍ଜଳି ପରେ କେତକୀ ପାଖୁଡ଼ା ଶୋହେ ।

× × × × ×

ଅନେକ ଦିନର ଶୁଷ୍କ ପାଖୁଡ଼ା ଅଧରେ ଛୁଇଁଲେ ଜେମା
ଗୋପନରେ ଶତ ବେଦନାର ମସୀ ହୃଦୟୁ ଭରିଲା ସିନା!—
"ଲୋଡ଼ା ନାହିଁ ମୋର ଅଙ୍ଗର ସାଜ; ଫିଙ୍ଗିଦେ, ପରିଚର !"
ସ୍ୱୟମ୍ବରକୁ ଯିବ ଏ ଶୁଷ୍କ କେତକୀ ପାଖୁଡ଼ା ଧରି ।"

ତା ୨୫ । ୩ । ୬୨
ରେଭେନ୍‌ସା କଲେଜ

# ଉତ୍ତର

ସଭ୍ୟେଁ କହିଲେ ସମବେଦନାରେ ଉଚ୍ଛୁଳି,
ନିଥର ବୁକେ ମୋ ଆଶାର ଆଲୋକ ବିଚ୍ଛୁରି,
"ତୁମ କବିତାର ସୁନ୍ଦର ରୂପ ଛବି ଗୋ
ଲେଖଣୀରେ ତୁମ ଏତେ କରୁଣତା କିବା ଗୋ"

"ଲୁହ ଧୂଆ ତୁମ ମରମ ତଳର ଗୀତିକା
ବ୍ୟର୍ଥ ଆହତ ମଉଳା ମନର ବୀଥିକା
ସକଳ ପରାଣେ ବେଦନାରେ ଦିଏ ଥରାଇ
ହତାଶୀ ନୟନୁଁ ଅଶ୍ରୁ ଦିଏ ଗୋ ଝରାଇ"
ତୁମ ଜୀବନେ କି ଉଦୟ ମାଗିନି ରବି ଗୋ
ଏତେ ଆକୁଳତା କାହିଁକି ତରୁଣୀ କବି ଗୋ ?"

ବୁକୁଫଟା କୋହ ଉଚ୍ଛ୍ୱାସେ ନିଜେ ବିଥିଲି
ମୁହୂର୍ତ୍ତପାଇଁ ଖୋଲେ ମୁଁ ମନର କବାଟ
ଉଦ୍ୟାନେ ମମ ଶୁଖି ଝରିଯାଏ ଚମ୍ପା
କାହା ବୁକେ ନାହିଁ ମୋ' ପାଇଁ ଅନୁକମ୍ପା ।
ଗୁରୁ ଗୌରବ ପରାଜୟ ମାଗେ ନିତି ଗୋ
ଜୀବନରେ ମମ ସବୁ ବିପରୀତ ଗୀତି ଗୋ ।

ଚକ୍ଷୁ ସମୀପେ ନର୍ତ୍ତନ କରେ ଧ୍ୱଂସ
ସକଳ ବିଭବ ହରିନିଏ ଶତ୍ରୁ କଂସ ।
ସୀମିତ ଏ ମୋର ଜୀବନରେ କେବେ ସଜନୀ
ପାହିନି ଗୋ ଦିନେ ପ୍ରୀତି ଉଜ୍ଜ୍ୱଳ ରଜନୀ ।

ବ୍ୟସ୍ତ ଚକିତ ଲେଖଣୀ ମୋ ଚିର କାତର
ତେଣୁ ମୋ ସୃଷ୍ଟି ଦୁଃଖରେ ଭରା ସାଗର "

ତା ୨ । ୯ । ୭୧

## ଉଦୟ ଅର୍ଚ୍ଚନା

ଲକ୍ଷ ତାରା ଯେଉଁ କାଳେ ଅସ୍ତଗଲେ ସେଦିନ ସେ ଉଦୟ ମାଗିଲା,
କପଟ ନିରାଶ କରି ତାହାରେ ମୁଁ ଦେଇଥାନ୍ତି ଠେଲି ?
ଅଯାଚିତ ଭାବେ ସିଏ କକ୍ଷେ ମୋର ଆଲୋକ ଭରିଲା
ଅନ୍ତର ଉଦ୍ୟାନ କୋଳେ ଫୁଟାଇଲା ଅଯୁତ ଗୁଲ୍ମେଲି ।

ଅମାବାସ୍ୟା କଳାରାତ୍ରି ଶେଷଯାମେ ବହଳ ଅନ୍ଧାରେ
ତା ଜ୍ୟୋତି ଉଇଁଲା ଧୀରେ ମୋ ମନର ଗଭୀର ଗହ୍ୱରୁଁ
ବିଗତର ଅବଶୋଷ ଅବଚ୍ଛେଦ ସ୍ମୃତି ଶିହରଣେ
ଗୃହଆଡ଼େ ଖେଳାଇଲା ନୂଆବାର୍ତ୍ତା ନୂତନତ୍ୱ ସବୁ ।

ଅଜସ୍ର ତାରକା ବିଶ୍ୱ ନିଭିଗଲା ତା ଦୀପ୍ତିର ରାଗେ
ଆରଣ୍ୟକ – ନିଃସଙ୍ଗତା, ଅଜ୍ଞାତର ମିଥ୍ୟା ସମଗ୍ରର
ସକଳ ତୁଟାଇ ସିଏ ଦେଲା ଏକ ଶାଶ୍ୱତ ବେଦନା
ନୀରବ ହୃଦୟ ତଳେ ଫୁଟାଇଲା ପୁଲକ ଜୁଆର ।

ଜାଣୁଛି ମୁଁ ନିଶ୍ଚେ ଦିନେ ସିଏ ପୁଣି ବିଲୟ ଭଜିବ
ପୁଣି ଏ ଜୀବନେ ଆସି ଦେଖା ଦେବ ତିମିର ସୂଚନା
ତଥାପି ତ ମୋ ପରାଣ ତିଳେମାତ୍ର ଶଂକାକୁଳ ନୁହେଁ
ମୁଗ୍ଧ ସମ ଶୁଭ ଲଗ୍ନେ ମୁଁ କରୁଛି ଉଦୟ ଅର୍ଚ୍ଚନା ।

୧୯ । ୯ । ୭୧

## ଆବିଷ୍କାର

ମୁଁ ତାକୁ ଖୋଜଇ ଆଜି ସନ୍ତର୍ପଣେ ଗୋପନେ, ମଉନେ
ସେଠାରେ ଖୋଜେ ମୁଁ ଯହିଁ ଗିରିମାଳା ନୀଳନଭ ଚୁମେ,
ନଦୀର ଉଚ୍ଛଳ ସ୍ରୋତ ମିଶେ ଯହିଁ ସାଗର ସୀମାରେ
ସେହିଠାରେ ଖୋଜଇ ମୁଁ ବ୍ୟସ୍ତ ହୋଇ ସଞ୍ଜ ଓ ସକାଳେ ।

ତା'ରେ ମୁଁ ସନ୍ଧାନ କରେ ଲୋକାରଣ୍ୟେ ଆବେଗ ଆଗ୍ରହେ
ନିର୍ଜନ ବନାନ୍ତରେ ମୁଗ୍ଧଭରେ ତାକୁ ଚାହିଁ ରହେ;
ତାହାର ବଦନ-ଶୋଭା ନିରେଖେ ମୁଁ ପ୍ରିୟଜନ ମୁଖେ,
ତା ଛବି ଖୋଜଇ ଆଜି ଲାସ୍ୟମୟୀ ଗୋଲାପର ବୁକେ ।

ଖୋଜେ ମୁଁ ବିବ୍ରତ ହୋଇ ସହରର ବିପଣି ବିତଳେ,
ତାହାରେ ମୁଁ ଖୋଜି ବସେ ଗଳି କନ୍ଦି, ରାଜରାସ୍ତା ପରେ,
କିନ୍ତୁ ତା ସାକ୍ଷାତ ନାହିଁ ରହିଛି ସେ ଲୁକ୍କାୟିତ ପ୍ରାୟ,
ବ୍ୟଥିତ କ୍ଲାନ୍ତ ମୋ ମନ—ଏତେ ଶ୍ରମ ବ୍ୟର୍ଥ ହେଲା ହାୟ ।

ତଥାପି ଖୋଜିଲି ତା'ରେ ସଂଗୋପନେ ନିବିଷ୍ଟ ଚିତ୍ତରେ
ଇଏ କି ଅଦ୍ଭୁତ ସତେ ! ଉଭା ସେ ମୋ ଅନ୍ତର ଭିତରେ ।

୨୮ । ୭ । ୬୧

## ସମୟ

ସମୟ-ଝରକା ଖୋଲି ମୁଁ ଚମକି ଚାହେଁ ବାରମ୍ବାର
ଆସୁଥିବ ତୁମେ ଅବା ଚିରି ଚିରି ରାତିର ଅନ୍ଧାର···
ନିଭାଇବ ମୋ ମନର ଦର୍ପଣରୁ ମିଥ୍ୟା ପ୍ରତିବିମ୍ବ
ଫୁଟାଇବ ଚିନ୍ତା ମୋର କଳ୍ପନାକୁ କରିବ ସଜୀବ ।

ଏ ମୋର ପ୍ରତୀକ୍ଷା ମାନ ଅତୃପ୍ତ ଓ ସ୍ମୃତିର ନିଶ୍ଚେତନ,
ଉଦ୍‌ଭ୍ରାନ୍ତ ରାତି ବୁକୁରେ ହଜୁ ମୋର ଅଶ୍ରୁ କ୍ରନ୍ଦନ,
ପ୍ରହେଳିକା ସ୍ୱପ୍ନ ଆଜି ଜର୍ଜରିତ ଆତ୍ମା-ଅପମାନେ
ପାଷାଣ ବିଗ୍ରହ ମୋର ହାଇମାରେ ସ୍ମୃତିର ସୋପାନେ ।

ଅସୀମ, ଅଶେଷ ଏ ଯେ ଅମା ନିଶି ତୀବ୍ର ବିଡ଼ମ୍ବନା
ପ୍ରାଣକରେ ଅବରୁଦ୍ଧ ସମୟର ନିଷ୍ଠୁର ଲାଂଛନା ।
ମୂର୍ଚ୍ଛିତ ମୋ ଅଭିମାନ ମରିଯାଏ ମନ ଦେହଳୀରୁ
ଶ୍ୟାମଳ ପତନି କୁଞ୍ଜେ ଗୀତ ହଜେ ଅନିଳ ଲହରୁଁ···

ମଣିଷ ଅନ୍ତରପରେ ସମୟର ବିଜୟ ଘୋଷଣା
ପ୍ରତି କ୍ଷଣେ ଭରିଦିଏ ଅସ୍ତ ଏକ ସୂର୍ଯ୍ୟର ଚେତନା ।
ସମୟ ଶାସନେ ଯଦି ଶୂନ୍ୟହୁଏ ଆଶାଓ ଉଚ୍ଛ୍ୱାସ,
ପ୍ରତୀକ୍ଷା ମୋ ଶେଷ ନୋହୁ···, ଯାଉଛୁଟି ଆଗ୍ନେୟ ବିଶ୍ୱାସ ।

ମାର୍ଚ୍ଚ—୧୯୭୧

## ସ୍ୱର୍ଗ-ଉପଭୋଗ

ଯେଉଁ ଗୀତ ହଜିଗଲା ପ୍ରଶାନ୍ତ ଏ ଆକାଶ ବୁକୁରେ
ଯେଉଁ ରୂପ ଲୁଚିଗଲା ମଞ୍ଜୁଳ ଏ ଉଦ୍‌ବେଳ ମୁକୁରେ
ଯେଉଁ ଧୂପ ନିଭିଗଲା ଗୋଧୂଳିର ଫିକା ଆଲୋକରେ
ଯେ ପୁଲକ ଝଡ଼ିଗଲା ଅସ୍ଥିର ଏ ଦେହ ନର୍ମୋକରେ···।

ମୁଁ ଝୁରୁଛି ସେଇ ଗାନ ପ୍ରାଣଭରି ଶୁଣିବାକୁ ଥରେ
ଏ ସୃଷ୍ଟିର ଧ୍ୱନି ଯେତେ ମୋ ପରାଣେ ତୃପ୍ତି ନାହିଁ ଭରେ;
ବିକ୍ଷତ ମୋ ହୃଦ୍ୟା କାନ୍ଦେ ତାହା ଲାଗି ଶୋଣିତ ବରଷି
ଉନ୍ମନ୍ତ ଗଗନେ ଯିଏ ମିଶିଗଲା କ୍ଷୁଦ୍ର ଊର୍ମି ରଚି ।

ସଙ୍କୋଚ-କାତର ଅତି ଚକ୍ଷୁ ମୋର ନିଷ୍ପ୍ରଭ, ମଳିନ
ଜଳିଗଲା ମୋ ଆଗ୍ରହେ ମରିବେ ମୋ ଗୌରବ ସେଦିନ
ତାହା ସାଥେ ନିଭିଗଲା ପୃଥିବୀର ଅଗ୍ନି ସମାରୋହ
ବ୍ୟଥିତ, କ୍ଷୁବ୍ଧ ମୁଁ ଝୁରେ—ଉଚ୍ଛ୍ୱସିତ ବୁକୁଫଟା କୋହ ।

× × × ×

ଝୁରୁ ଝୁରୁ ମନତଳେ ଆଜି ମୋର ସହସ୍ର ପ୍ରତୀକ୍ଷା
ଅଭିମାନ ତଳେ ନାଇଁ ଅନ୍ତରରେ ବିମୁଗ୍ଧ ତିତିକ୍ଷା—
ବିନିଦ୍ର ରଜନୀ ବିତେ, ଅଶ୍ରୁ ସିକ୍ତ ଦିବସ ସମ୍ଭୋଗ;
ମର୍ମସ୍ତାପେ ଦଗ୍‌ଧ ମୁଁ ଯେ—ସେଇ ମୋର ସ୍ୱର୍ଗ-ଉପଭୋଗ ।

୨୪ । ୩ । ୬୧

## ଅଭାଜନ

ନନ୍ଦନ ବନ ପାରିଜାତ ତୁମେ, ମୁଁ ଧରାର ଘାସଫୁଲ,
ରୂପ ଗୌରବେ ଥରିଯାଅ ଯେବେ ଦେବତା କୁଞ୍ଜ-ପୁରେ,
ଚାହିଁ ଚାହିଁ ତୁମ ବିପୁଳ ବିଭବ ସରମେ ଝରଇ ମୁହିଁ······
କିପରି ମୁଁ କହ ? ତୁମ ସଙ୍ଗତେ ମାତିବି ସପନ ଦ୍ୱାରେ ? ?

ଅନ୍ଧାରଘେରା ବନାନୀର ଛାତରେ ଜ୍ୟୋତିରିଙ୍ଗଣ ମୁହିଁ
କରୁଣ ବନ୍ଧନ, ଅବାଞ୍ଛିତ ମୁଁ ମୋର ସମ୍ମାନ ନାହିଁ;
ନୀଳ ଆକାଶର ଅଙ୍ଗନୁ ପରା ଚନ୍ଦ୍ରିକା ଢାଳ ତୁମେ,
ରଜତ-ଜ୍ୟୋତ୍ସ୍ନା ବିଜଡ଼ିତ କର ପୁଲକିତ ଧରାଭୂମେ···

କ୍ଷୁଦ୍ରଶିଳା ମୁଁ, ତୁମେ ଅଟ ପରା ଉତ୍ତୁଙ୍ଗ ପରବତ,
କି ଆଶାରେ କହ ଲୋଡ଼ିବି ତଥାପି ତୁମରେ ମୁଁ ପରାହତ ?
ରାଜ ସମ୍ମାନ ତୁମଠାରେ ଯହିଁ ସେପଥେ ମୁଁ ଭିକାରୁଣି;
ତୁମେ ଯହିଁ ଥାଅ ଉଜ୍ଜଳ ହୋଇ ରିକ୍ତ ମୁହିଁ ଯେ ପୁଣି ।

ଅନ୍ତରଂ କା'ର ଛୁଇଁନି ମୁଁ କେବେ କିଂଶୁକ ବାସହୀନ,
ଚମ୍ପକ କଳି-ସୌରଭ ତୁମେ; ତୁମପାଇଁ ସମୀଚୀନ
ସାରା ବିଶ୍ୱର ମୁଗ୍ଧ ଅଧୀର, ସୁନ୍ଦରତମ ଯାହା ।
କି ସାହସେ କହ ତୁମଠାରେ ଚାହିଁବି ହୀନ ମୁଁ ଅଧମ ଆହା ? ?

୧୮ । ୧ । ୬୦

## କାମନା

ମୁଁ ଆଜ ଘୂରୁଚି ଜନହୀନ ଏଇ ନୀରବ ସରଣୀ ପରେ
ଊର୍ଦ୍ଧ୍ୱେ ଉଠୁଚି, ନିଜ ଆତ୍ମାର ସୂକ୍ଷ୍ମ ବିକାଶ ତଳେ,
ମୁଁ ଦେଖୁଚି ସେଠି ଗୋଟିଏ ଦେବତା, କୋଟିଏ ପୂଜାର ଫୁଲ
ଅର୍ଚ୍ଚନା ଲାଗି ଗନ୍ଧ ସୁମନ, ଚନ୍ଦନ ବାସ ଠୁଳ ।

ବନ୍ଧୁ ସ୍ୱଜନ କେହି ନାହାଁ ତହିଁ ମାୟାବନ୍ଧନ ହୀନ
ସେଠି କେହି ନାହିଁ ଶ୍ରେଷ୍ଠ ଧର୍ମୀକ, କେହି ଭିକ୍ଷୁକ ହୀନ,
ସେଠାରେ କେବଳ ସ୍ରଷ୍ଟା ମୁଁ ଏକ, ସୃଷ୍ଟି କରତା ଜଣେ,
ଉଭୟ ପାଇଁକି ସ୍ନେହ ଶ୍ରଦ୍ଧା ଜାଗଇ ଉଭୟ ମନେ ।

ସ୍ରଷ୍ଟା ସେ ବୁଝେ ନିଜ ସୃଷ୍ଟିର ଅନ୍ତରତଳ କଥା,
ତା ନୟନରୁ ଛୁଟେ ଲୋତକ ବନ୍ୟା, ତା ମରମେ ଲାଗେ ବ୍ୟଥା;
ତା ଅଧର ଧାରେ ଫିଟି ଫିଟି ପଡ଼େ ହସ ଅବା ଅବଶୋଷ,
ନିଜ ସୃଜନର ଗର୍ବେ ଚଳେ ତା, ବଜାୟ ନନ୍ଦଘୋଷ ।

ମୁଁ ଚାହୁଁଚି ତହିଁ ବିତିଯାଉ ମୋର ଅନ୍ତ ବିହୀନ କାଳ
ସୃଜନ, ପ୍ରଳୟ ଯୁଗେ ଯୁଗେ ରଚୁ ନର୍ତ୍ତନ ଅସୁମାର;
ଗୋଟିଏ ଦେବତା ସମ୍ମୁଖେ ଖାଲି ନିଜରେ ମିଶିବି ମୁଁ ଭୁଲି
ମୁଁ ଆଜ ଚାହୁଁଚି ପାଲଟିବାକୁ ତା ପଦପ୍ରାନ୍ତର ଧୂଳି ।

୪ । ୧୨ । ୭୧

## ଅପ୍ରକାଶ

ପରାଣ ପାଇଁ ନିଃଶେଷ କରି ମମତା
କଳିକାରେ ଦେଲି ପୁଷ୍ପର ଗଉରବ,
ଲକ୍ଷ ମନରେ ରସାଣିତ କରେ ଆଜି
ସେଇ କଳିକାର ବିମୁଗ୍ଧ ସଉରଭ ।

ଦୀପଶିଖା ଜାଳି ଘନ ତିମିରିତ ପଥେ
ନିଜକୁ ଭୁଲିଲି ନିଥର ନିଶୀଥ ଜାଗି,
ଉଲ୍ଲାସେ ଆଜି କୋଟି ଅନ୍ତର ଭରେ
ସେଇ ଦୀପାଳୀର ଦୀପ୍ତ ଆଲୋକ ଲାଗି ।

କେବେ ମୁଁ ଚାହିଁନି ପୁଷ୍ପ ପରାଗ ବୋଲି
କରିବାକୁ ମୋର ଆତ୍ମାରେ ଆମୋଦିତ;
ସୃଷ୍ଟିରେ ମୋର ଅନ୍ଧାର କାରାବାସ······
କରିନି କେବେ ମୁଁ ନିଜ ପଥେ ଆଲୋକିତ ।

ବିଶ୍ୱାସ ନେଇ ସବୁ ବ୍ୟର୍ଥତା ପରେ
ଗଡ଼ାଯୁ ସ୍ୱାର୍ଥେ ବିକଳ ବିଳାପ ଭୁଲି;
ଲକ୍ଷ ବୁକୁରେ ଫୁଟାଇ ପୁଲକ ସୁଅ
ଉଦ୍‌ଗତ ମୁଁ ଯେ ଗର୍ବରେ ଉଠେ ଫୁଲି ।

୩ । ୬ । ୬୧

## ଯାଚନା

ସଉଭାଗ୍ୟ ଗୃହେଁ ନାହିଁ, ମୁଁ ଗୃହେଁନି ବିପୁଳ ସମ୍ମାନ
କାମ୍ୟ ମୋର ଏ ଜଗତେ ଯାହା କରୁ ମୀରବ, ନିଷ୍ପ୍ରାଣ,
ଦୁର୍ଭାଗ୍ୟ ମୋ ଦେବାଶୀଷ, ମନ୍ଦ ଆଜ ଅତି ପ୍ରିୟ ମୋର,
ଅମୃତ ପିୟାସୀ ନୁହେଁ, ଦିଅ ମୋତେ ମୃତ୍ୟୁର ଗରଳ ।

ମୁହିଁ ଅତି ଅସହାୟ, ପରାହତ, ଲାଞ୍ଛିତା ଆଜି
ତେଣୁ ମୋ ଜୀବନେ ମୁହିଁ ଭରିଦିଏ ଅବସାଦ ରାଜି;
ପ୍ରେମ, ପ୍ରୀତି ଲୋଡେ ନାହିଁ ଲୋଡ଼େନି ମୁଁ ପ୍ରଣୟ ପୁଲକ,
ଲିଭାଇ ଦେଉଚି ତେଣୁ ମୋ ଜୀବନୁ ସମସ୍ତ ଆଲୋକ ।

ମୋ ପରାଣ ସଉରଭ କରିନାହିଁ ଉଚ୍ଛ୍ୱସିତ କାରେ,
ଅଲୋଡ଼ା ମୁଁ ଅବାଞ୍ଛିତ ଆନନ୍ଦରେ ଆଶା ନାହିଁ ବାରେ,
ହସ ମୋର ଲୋଡ଼ା ନାହିଁ, ଲୋଡ଼ା ନାହିଁ ଉଚ୍ଛୁଳା ଆବେଗ,
ଅଶ୍ରୁ ମୋର ଚିର କାମ୍ୟ, ବ୍ୟର୍ଥ ଆଜ ସବୁ ଗଉରବ ।

ଶୀତଳ ଜୋଛନା ଲିଭୁ, ଆସୁ ଘୋଟି ଘନ ଅନ୍ଧକାର,
ମୁଁ ହୁଏଁ ପଥର ସରି ଅନୁଭବ ବିହୀନ, ଅସାର ;
ଆଶାର ସଉଧ ତଳେ ନିଷ୍ପେଷିତ ମନ ମୋ ବିଳପେ
ବ୍ୟର୍ଥତା ହିଁ ସତ୍ୟ ଏକା, ପଥପ୍ରାନ୍ତେ ମୁଁ ଆଜ କଳପେ !

୩ । ୧୨ । ୬୦

## ଦାବି ଓ ଦାନ

ପୁଷ୍ପର ମଧୁ ଗନ୍ଧି ପାଇଁ କି ବ୍ୟାକୁଳିତ ହୋଇ ମନେ
ମଧୁକର ସାଜ ଅତି ବଳ୍ଗଲେ ଭ୍ରମିଲେ ମୁସ ଉପବନେ
ଯେଉଁଠାରେ ଖାଲି ସହସ୍ର ଫୁଲ ଫୁଟି ନେଉଥିଲେ ମାଗି
ଅଞ୍ଜଳିଭରା ଭେଟି ଦେଉଥିଲେ ଗୁଞ୍ଜନ ନେବା ଲାଗି ।

ସହସା ଶୁଣିଲି ଦୁଇ ବଗେ ଦୁଇ ଆତୁର କଣ୍ଠ ଡାକ—
"ବନ୍ଧୁ ମୋ ପାଶେ ଆସି ଥରେ ଆଜ ଅନ୍ତରେ ମଧୁ ରଖ"
ଏକ କହିଗଲା "ପୁଷ୍ପିତା ମୁଁ ଓ, ସମ୍ଭୋଗ ଆଜ ଗୃହେଁ"
ଆରେକ କହିଲା "ମଉଳା ମୁଁ, କା'ର ସାନ୍ନିଧ ନାହିଁ ପାଏ ।"

"ଜଙ୍ଘେ ମୋ ଆଜ ଲକ୍ଷ ବାସନା ଉନ୍ମୁଳ ଉଠେ ବନ୍ଧୁ,
ଫିଟିପଡ଼େ ଶତ ସୌରଭ ମୋର ପ୍ରତି ପାଖୁଡ଼ାର ଛନ୍ଦୁ,
ମଧୁ ଲୁଟି ନେଇ ସ୍ୱପ୍ନ ଦେଇ ଯା, ସୃଷ୍ଟି ବିକାଶ ସାର୍ଥକ କର ମୋର
ଫେରିଯିବୁ ଯଦି ସାରା ଜୀବନେ ମୋ ପୂରିବ ଦୁଃଖ ଘୋର ।"

କାତର କଣ୍ଠେ ଅନ୍ୟଟି କହେ—"ଜୀବନ ମୋ ଅତିକ୍ଷୀଣ,
ମୁହୂର୍ତ୍ତ ପରେ ଝରିଯିବି, ସବୁ ଆକାଂକ୍ଷା ହେବ ଲୀନ,
ଆଉ ଫୁଟିବା ତ ସମ୍ଭବ ନୁହେଁ—ଅନନ୍ତକାଳ ବାହି
କରୁଣତା ନେଇ ତୃପ୍ତି ଦେଇ ଯା; ଶେଷ ସମ୍ବଳ ପାଇ ।

ବିବେକ-ବିହୀନ, ରୁକ୍ଷ ନିହାତି, ନିର୍ବେଦ ଶିଳାସମ
ଶୁଣି ପାରିଲା ନି କାହାର ଦାବୀ ମୁଁ ଅନୁରୋଧ ଅନୁପମ;
ରଖି ପାରିଲା ନି ନିବେଦନ କା'ର, କାହାର ମିନତି ତଳେ
ଥରି ଥରି ନିଜେ ଉଦ୍ୟାନ କୋଳୁଁ ଲେଉଟିଲି ନତ ଶିରେ ।

୧୪ । ୮ । ୬୧

# ଗୋଲାପର ଆଶ୍ୱାସନା

ଆକୁଳ ଏକ ଛନ୍ଦ ଭରି ଲଗନେ,
ବାଦଲ ଘେରି ଚନ୍ଦ୍ର ଥିଲା ଗଗନେ,
ଉଚ୍ଛ୍ୱାସରେ ନ ଜାଣି
ଧାଇଁଲି ମୁଁ ଗୋ ଉଜାଣି,
ଯେଉଁଠି ଖାଲି କଣ୍ଠହରା ଗୋଲାପ
ପାଖୁଡ଼ା ଝାଡ଼ି କରୁଥିଲା ସେ ବିଳାପ ।

ଅଜଣା ଆଶା ବନ୍ଧେ ନେଇ ସୋହାଗେ,
ଖୋଜୁଥିଲି ମୁଁ ଲୁପ୍ତଧନ ସନଗେ,
ଦୁର୍ଲ୍ଲଭ ସେ, ତଥାପି
ଲୋଡ଼ୁଥିଲି ମୁଁ ସରାଗୀ,
ନୟନରୁ ମମ ଝରିଲା ଲୁହ ଅଶେଷ,
ଗୋଲାପ ବୁକୁ ଆର୍ଦ୍ର ହେଲା ବିଶେଷ ।

ଫୁଲ କହିଲା—"କି ଲାଗି କାନ୍ଦ ତରୁଣୀ,
ହୃଦୟତଟେ ବେଦନାଭରି ଉର୍ମି,
କମ୍ପାଇ ତୋ ବୁକୁରେ
ହାସ୍ୟହୀନ ମୁଖରେ
ଅଶ୍ରୁବୋଳା ସଜଳ ଆଖି ଫୁଟେଇ,
ସାଗରେ ତୋର ଲହରୀ ମାଳା ଛୁଟେଇ ।"

"ତୁ ଯାହା ଖୋଜୁ, ମୁଁ ଉ ବି ତାହା ଖୋଜଚି,
ସେ ଲାଗି ସାରା ଜୀବନ ମୋର ବଞ୍ଚିତ
କିନ୍ତୁ ସଖୀ ସପନ,
ଦେଖିବା ତାର ଲପନ,
ହଜିଚି ଯାହା ଥରଟେ ପାଇଁ ଜୀବନେ,
ଫେରିବନି ଲୋ କାନ୍ଦି ମଲେ ମଉନେ ।"

ସୁଖର ଦିନ ଥରଟେ ଆସେ ସଜନି,
ତା ପଛେ ଆସେ ଦୁଃଖ ଭରା ରଜନୀ,
ଫେରିଯା ନିଜ ସଦନେ,
ପ୍ରୀତି ଉଚ୍ଛଳା ବଦନେ,
ଭୁଲିଯା ସବୁ କଷ୍ଟଦାୟୀ ଅତୀତ,
ହୁଅନା ଆଉ ବାତୁଳ କବା ବ୍ୟଥିତ ।

ଗୋଲାପର ଏ ସମବେଦନା ବାରତା
କଲା ସିନା ମୋ ତରୁଣୀ ମନ ଆରତା;
ଏପରି ଏକ ରାତିରେ
ଦୁର୍ବିନୀତ ରୁତରେ
ହାକିଲ ତାଜ ଖୋଜିବାରେ ସେ ତୃପନ୍ତ
ଜାଣେନା, କେବେ ପୁଷ୍ପରାଣୀ ସୁମନ୍ତ ।

ତା ୧୦ । ୧୦ । ୬୧

## ତାରେ ମୁଁ ଭଲ୍‌ପାଏ

ମଉଳା ଫୁଲରେ ମାଟିକୁ ଯିଏ ସାଉଁଟି ନିଏ,
ପଲାସ ଫୁଲକୁ ଆଘ୍ରାଣି ଯିଏ ବିଭୋର ହୁଏ ।
ହସଠାରୁ ଯିଏ ଅଶ୍ରୁକୁ ବେଶୀ ନିଜର ମଣେ,
ମୁଁ ତାହାକୁ ସଦା ପୂଜା କରୁଥାଏ ଆପଣା ମନେ ।

ଆଲୁଅଠୁଁ ଦୂରେ ଅନ୍ଧାରବାସ କାମନା ଯାର,
ମସ୍ତକେ ଯିଏ ବହନିଏ ଗୁରୁ ବେଦନା ଭାର,
ଧନକୁ ଭୁଲି ଯେ ଦରିଦ୍ରତାକୁ ବରଣ କରେ;
ତାହା ଲାଗି ମୋର ଅନ୍ତର ତଳେ ମମତା ଝରେ ।

କ୍ଷଣିକ ସକଳ ପରିହରି ଯିଏ ନିତ୍ୟ ଗୃହେଁ
ସତ କହୁଚି ମୁଁ ସବୁଠୁଁ ତାହାରେ ଶରଧା ପାଏ ।

ତା ୩ । ୯ । ୭୧

## ହସି

ମୁଁ ହସୁଚି ଛଳ ଛଳ ବକ୍ଷେ ମୋର ଅକ୍ଷତ ପିପାସା
ଅବ୍ୟକ୍ତ ଆର୍ତ୍ତିବେଗ ଭରି କଣ୍ଠ ଝରେ ସ୍ନେହ ସିକ୍ତ ଆଶା,
କିନ୍ତୁ ଏଇ ହସ ନୁହେଁ ମୁଗ୍‌ଧ ମୋର ଆତ୍ମିକ କାହାଣୀ,
ମୁଁ ବସୁଚି ଓଷ୍ଠଧାରେ ଇଚ୍ଛାହୀନ ହାସ୍ୟରେଖା ଟାଣି ।

ମୋ ହସର ଅଙ୍କ ଶୂନ୍ୟ, ଜୀବନର ସଙ୍କେତ ବିହୀନ,
ଅଧରେ ମୋ ଧାରେ ହସ, ଅନ୍ତରେ ମୋ ଅଶ୍ରୁ ରୋଧହୀନ;
ପ୍ରାଣ-ନିର୍ଝରିଣୀ ସମ ହାସ୍ୟ ମୋର ଉଚ୍ଛ୍ୱସିତ ନୁହେଁ
କ୍ଷଣେମାତ୍ର ହସେ ଯଦି ଆଦ୍ରତା ମୋ ବକ୍ଷତଳ ଛୁଏଁ ।

ମୁଁ ଖାଲି ହସୁଛି, ଆଜି ଜଗତକୁ ହସାଇବା ପାଇଁ
ମୋ ମନରେ ଅଗ୍ନିଦାହ, ସେଥିପାଇଁ ଶୋଚନା ମୋ ନାହିଁ ।

୨୩ । ୯ । ୭୨

## ସେବକା

ହସି ହସି ସେବା କର ସିଏ ଖାଲି ହସାଏ ଧରଣୀ,
ତା' ମନେ ନିଶ୍ଚିତ ଆଶା ଦେବାହିଁ ତ ସ୍ୱର୍ଗର ସରଣୀ,
ସିଏ ଭୁଲେ ତା ବୁକୁରେ ସୁପ୍ତ ଯେତେ ଅବଦମ୍ଭ ଆଶା
ଲୁମାଖ୍ ଅନ୍ତର ତାର ଲୋଡ଼େ ନାହିଁ ସମ୍ଭୋଗ ପିପାସା ।

ସେ ଦେଖିଚ ଆଖି ଆଗେ କେତେ ଅସ୍ତ, ଉଦୟ, ସମ୍ମୋହ
କେତେ ଆତ୍ମା ହାହାକର, ବୁକୁଫଟା ଉଚ୍ଛ୍ୱସିତ କୋହ,
ସକଳର ନିର୍ବିଶେଷେ ଢାଳିଚ ସେ ଅମୃତ ଝରଣା,
ପାଶୋରିଚ ନିଜ କଥା, ନିଜ ବ୍ୟଥା ଅକୁହା, ଅଜଣା ।

କୋଟି ଚକ୍ଷୁତଳେ ଆଜି ନଇଁ ଯାଏ ତା ମନ ଚେତନା,
ସବୁଠି ସେ ପାଏ ଖାଲି ଅପବାଦ, ଘୃଣା ଓ ଲାଞ୍ଛନା;
ନିଜର ଜୀବନେ ଭୁଲି, ଜଗତରେ ଏତେ ଦାନ ଦେଇ
ମରିବେ ବତାଏ କେତେ ଘନଘନି ଧୈର୍ଯ୍ୟହରା ହୋଇ ।

ସିଏ ଏକ ବିଷପାୟୀ, ଶୁଭ୍ରଧର୍ମୀ, ଧ୍ୟେୟ-ପ୍ରତିବଦ୍ଧ
ନିଜକୁ ସେବାରେ ଭୁଲେ-ଏଇ ତାର ସାଧନାର ସିଦ୍ଧି ।

ତା ୫ । ୧୧ । ୬୧

(ଜଣେ 'ନର୍ସ'ଙ୍କ ଉଦ୍ଦେଶ୍ୟରେ ଲିଖିତ)

# ସରଣୀ

ଏ ଜୀବନ ପଥେ ଯେତେ ଯେ ଆସିଲେ
ଆହ୍ୱାନ ମୁଁ ତ କରିନି;
ଅସାର ଏ ମୋର ତନୁ ତଟ ଧାରେ
ଉଲ୍ଲାସ କେବେ ଭରିନି ।
କାହାକୁ କନ୍ତୁ ଲେଉଟାଇ ନାହିଁ;
ବସିନି କାହାର ପଥ ଚୁହିଁ ଚୁହିଁ;
ଉପାସିକା ସାଜ ଜାଳନି ଜାଗର,
ଫେରାଇନି କାରେ କରି ହତାଦର,
ସକଳେ ଦେଇଚି ଉଚ୍ଛୁଳା ମମତା
ଅନ୍ତର କାରେ କରିନି
ହସ ଉଚ୍ଛ୍ୱାସେ ଥରିନି ।
ମରମ ତଳର ଉଜୁଡ଼ା କାହାଣୀ
ଶୁଣାଇଚି ଯେତେ ଗୋପନୀୟ ବାଣୀ,
ସବୁରି ଅଧରେ ଲେଖିଚି ହରଷ,
ଲୁଂଠନ କରି କାମନାର ବିଷ,
କିଏ ପର କିଏ ଅଛ ଆପଣାର
ସେ ହିସାବ କେବେ ଧରିନି,
ବ୍ୟର୍ଥ ବିଳାପ କରିନି ।
ଯେଉଁ ଲଗ୍ନରେ ସବୁ ଫେରିଗଲେ
ଲାଂଛନା ଦେଇ ରାଗ ରୋଷ ଭରେ
ଶୂନ୍ୟ କରି ମୋ ଜୀବନ ସରଣୀ,
ସମ୍ଭୋଗ ଆଶା ମନତଳେ ଗଣି,
ଅଶ୍ରୁ ଆବେଗେ ଆଲୁଳିତା ହୋଇ
ପଥରୋଧ କାର କରିନି;
ଚଂଚଳପଦ ଧରିନି ।

୭ । ୧୧ । ୭୧

## ଗତ

ବହଳ ଆକାଶ ତଳେ ବ୍ୟସ୍ତ ଆଶା ଗର୍ଭରେ ଗରଜେ
ସାମ୍ନାରେ ସାଗର ନୀଳ, ଚନ୍ଦ୍ରବାଲିର ସ୍ୱପ୍ନ ମାୟା ଜାଲ,
ଗୋଟିଏ ନୌକାଟି ମୋର ଭାସିଯାଏ ଅତଳ ଜଳରେ
ବାହାରେ ଭୀଷଣ ଝଡ଼, ଅନ୍ତରରେ ଜୈବିକ ଶୀତ୍କାର ।

ନିଃସଙ୍ଗ ରବିର ତଳେ ବସ୍ତୀର୍ଣ୍ଣ ଏ ନୀଳରେ ପଦ୍ମର
ନୌକା ମୋର ଭାସିଯାଏ ଭେଟିବାକୁ ସଜଳ ପ୍ରଭାତ;
ମାଳଞ୍ଚ ବନରେ ଝଡ଼, ଲେଖା ନାହିଁ ସିକ୍ତ ମାଟିରେ
କଅଁଫୁଲ ବାସ ଝରେ, ଆଖି ଆଗେ ଅନ୍ଧକାର ରାତି ।

ଗୃହଅଙ୍ଗନ ଶୂନ୍ୟ ଖାଲି, ନୀଳ ଢେଉ, କଳା-ସମାବେଶ
ନିର୍ଧୂମ ଉନ୍ମତ୍ତ ବାୟୁ, ହୃଦୟରେ ବ୍ୟଥାର ବାଜଣା,
ଫିଟିପଡ଼େ କବରରୁ ଗୋଟି ଗୋଟି କୁସୁମ ପାଖୁଡ଼ା
କେଉଁଦିଗେ ନୌକା ଯାଏ, ତାହା ମୋର ଏକାନ୍ତ ଅଜଣା ।

କେବେ ବା ସମାପ୍ତ ହେବ ସମୁଦ୍ରର ନୀଳ ତ୍ରିବେଣୀ
ପାହିବ ଏ ଅମାବାସ୍ୟା, ଖୋଲିଯିବ ଗୁପ୍ତ ପ୍ରହେଳିକା,
କୂଳରେ ଲାଗିବ ଆସି ନୌକା ମୋର ଅସୀମ ଉଲ୍ଲାସେ
ସବୁ କି ସ୍ୱପ୍ନର ଆଶା, ନୀଳମୟ ବ୍ୟର୍ଥର ଲୀଳିକା ?

ତା ୯ । ୩ । ୭୨

## ଅବହେଳା ପଛେ ସହିବ

"ମୋ ଦେହ ମନର ଅଣୁକଣିକାରେ ପୂରି ରହିଚି ତୁ ମହିମା
ସବୁ କହୁଛ ମୋର ଅରପିବ ଆଗୋ ତୋ କର କମଳେ ହରଷେ"
ତୁମେ କୁହ ଯେତେ ମନଗଢ଼ା କଥା ଲୁଟିନେବା ପାଇଁ ସରମ
"ଶତ ଅପଘାତ ଭୁଲିଯାଏ ସଖି, ତୋହର ମଧୁର ପରଶେ ।"

କିନ୍ତୁ ମୋ ବୁକେ ପ୍ରଶାନ୍ତି ଜାଗେନି ତୁମ ବାଣୀ ଶୁଣି ବନ୍ଧୁ
ମୁଁ ଜାଣେ ଏ ତୁମ ନିମେଷ ଚେତନା, ନୁହେଁ ଏ ପ୍ରଣୟ ସିନ୍ଧୁ;
ନୁହଁଇ ତ ଇଏ ପ୍ରେମର ସାଧନା, ପ୍ରିୟର ଗୋପନ ସ୍ମୃତି
ନଥାଏ ସେଥିରେ ପ୍ରାଣ ପିପାସାର ଆଶା ସରାଗର ବନ୍ଧୁ ।

ବାରିବାହ ତୁମେ, ବର୍ଷେ ଧରିତ ସ୍ୱଚ୍ଛ ସଲିଳ ଅଶେଷ,
ସହସ୍ର ସାଗରେ ଢାଳିଦେବା ପାଇଁ ମମତା ତ ତୁମ ତୁଟିନି,
ଅବଶେଷେ ଯଦି କଣିକାଏ [illegible] ବନ୍ଧୁ ଗୋ ଦେବ ମୋ ଲାଗି
କପରି ମୁଁ କୁହ କଳ ଉଛୁଳି ସେ ଧାଇଁବ ତରଳା ତଟିନୀ ।

ଶୁଷ୍କ ସାହାରା ପାଲଟି ପଛକେ ଏଇ ମୋ ଜୀବନ ସରଣୀ,
ମୁଁ ଗୃହିଁନି ତୁମ ବନ୍ଧୁ ଏ ବାରି ଉଦାସୀ ମନର ସେନେହ
ସିଏ ସିନା ଖାଲି ମରଣକୁ ବଳି ବେଦନା ଦେଉଛି ବୁକୁରେ
ଅବହେଳା ପଛେ ସହି ପାରିବ ମୁଁ ଅନୁକମ୍ପା ଗୋ ଅସହ ।

ତା ୨ । ୧୨ । ୭୧

# ପୂଜାରୀ

ଦେବ୍‌ତା ହେ ତୁମ ମନ୍ଦିର ପାଶେ କେତେ ଯାଇଥିଲେ ପୂଜାରୀ,
ମରକତ ଝାପ, ଅମୃତ ଭୋଗ ନେଇଥିଲେ ଅବା ସଜାଡ଼ି,
ଅଗୁରୁ ଗନ୍ଧେ ଆମୋଦିତ କରି ସୁନ୍ଦର ତବ ମୂରତି
ବାଞ୍ଛି ଥିଲେ ଯେ ଯାହା ମନକଥା ପଦତଳେ ତାକି ପ୍ରଣତି ।

ସେମାନେ ମାଗିଲେ ସୁଖ, ସମ୍ଭୋଗ, ଯଶ ଅର୍ଜନ ଅନେକ
ସେମାନେ ମାଗିଲେ କୁବେରର ଧନ, ଯୌବନ ମଧୁ ଯେତେକ;
ହସ ମାଗିନେଲେ, ପ୍ରୀତି ମାଗିନେଲେ, ମାଗିନେଲେ ଆୟୁ ଅଶେଷ
ଏ ଦୁନିଆଁରେ ବାଞ୍ଛିତ ଯାହା ସବୁ କରିନେଲେ ନିଃଶେଷ ।

+ + + +

ସେମାନେ ଫେରିଲେ ମୁଁ ଆସିଲି ଧରି ଅଞ୍ଜଳି ପୂଜା ସୁମନ,
ନିଃସ୍ୱ ମୁଁ ଯେଣୁ ପାରିଲିନି ଆଣି ମଣି, ମାଣିକ୍ୟ ରତନ;
ତୁମ ପାଦତଳେ ଅରପିଲି ଖାଲି କେତୋଟି ଚମ୍ପା କଳିକା,
ଭକ୍ତ ମୁଁ ଦେଲି, ଅଶ୍ରୁ ଢାଳିଲି ଗାଇ ବନ୍ଦନ ଗୀତିକା ।

ଜାଣିନାଇଁ ମୁଁ ଓ ସମ୍ପଦ କିସ, ଜାଣିନି କି ଅବା ହରଷ
ଲକ୍ଷ ମୁଖରୁ ଶୁଣି ଚାହେଁନାଇଁ "ଗୌରବ ମୋର ସରସ"
ମୁଁ ଖାଲି ମାଗିଲି ଅଞ୍ଜଳିଭରି ଶୁଭାଶୀଷଟିଏ ତୁମରେ
ଅନ୍ତର ଭରି ଦେବତା ହେ ସତେ କବା ଦେବ ମତେ, ସୁମରେ ।

ତା ୧୦ । ୧୮ । ୬୧

## ମୋ କବିତାର ସଂଜ୍ଞା

"କବି" ବୋଲି କହି ଅଶ୍ରୁ ଭରିଲି ଆଖିରେ
ଏତେ ଗୌରବେ ଅଯୋଗ୍ୟା ମୁଁ ତ,
ଏତେ ଗର୍ବରେ ଲଜ୍ଜିତା ମୁଁ ତ,
ମୋ କବିତା କେବେ ରସାଇନି କାରେ,
ଭରିନି ପରାଣେ ଉଲ୍ଲାସ ବାରେ,
ଛୁଟାଇନି ମୁଁ ସଂଗୀତ ସୁଅ
ବକୁଳ ବନରେ କୁହୁକୁ କୋକିଳ ଡାକିଲେ
"କବି" ବୋଲି କହି ଅଶ୍ରୁ ଭରିଲି ଆଖିରେ ।

"କବି" ବୋଲି ମତେ କହିଲ କିଂପା ସାଥୀରେ
ରାକା ରଜନୀର ନୀରବତା ଚିରି
ପକ୍ଷୀ ଉଡ଼ିଲେ ଡେଣା ପିଟି ଥିରି,
ସଂଜ ଲଗନେ ଅମ୍ବର ପଖାଳି
ସୃଷ୍ଟିରେ ଦେଖି ହୋଇନି ଉତଳା,
ସଜ ସକାଳର ସୁନ୍ଦର ଶୋଭା
ଲେପିନି ତ କେବେ ସ୍ୱପ୍ନ ମୋ ଏଇ ଗୀତରେ
"କବି" ବୋଲି ମତେ କହିଲ କିଂବା ସାଥୀରେ ?

"କବି" ବୋଲି ଏତ ଉଚ୍ଛ୍ୱାସେ ସତେ କୁହକ
ମୋ ଆଖିର ଲୁହେ, ମୋ ଓଠର ହସେ
ଭରି; ଏଇ ମୋର କବିତା ପରଶେ
ମୋ ବୁକୁର ଗାନ, କଣ୍ଠର ବାଣୀ,
ଭରିଥାଏ ଯଦି ଅଶେଷ କାହାଣୀ,
ସେଇ ମୋ କବିତା ପଠନରେ କେବେ
ଆବେଗେ ଅଧୀର, ପୁଲକିତ ଯଦି ହୁଅନି,
"କବି" ବୋଲି କ୍ଷଣ ଉଚ୍ଛ୍ୱାସେ ତେବେ କୁହନି ।

୧୧ । ୧୨ । ୭୧

## ଜନ୍ମ

ଆକାଶେ ସହସ୍ର ତାରା ଖିଲି ଖିଲି ହସର ଲହଡ଼ି
କଟିକଟି ଅନ୍ଧକାର ଭରିଚି ଏ ଧରଣୀ ଦେହରେ
ବେଶ୍ ଏଇ ନିର୍ଜନତା, ଏଇ ସୃଷ୍ଟିଟା ଘୁମେଇ ପଡ଼ିଚି
ମୋ ଅଂଗରେ ଶିହରଣ ରାତିର ଏ ନୀରବ ପ୍ରହରରେ ।

ଆବିଷ୍କାର କଲି ମୁହିଁ ମୋ ଦେହରେ ଅଶେଷ ଲାବଣ୍ୟ
ମୋ ଓଠରେ ଦ୍ରାକ୍ଷାରସ, ମୋ ନାସାରେ ଚଂପକ ସୁରଭି,
ମୋ ଆଖିରେ ବନବାଳା ହରିଣୀର ବ୍ୟସ୍ତ ଚଂଚଳତା
ଉନ୍ମତ୍ତ ରୂପରେ ତେଜ, ମୋ କଣ୍ଠରେ ଜୀବନ ପୂରବୀ ।

ଲେଉଟି ମୁଁ ଅନାଇଁଲି ପଶ୍ଚାତରେ ସବୁଜିମା ଭରା
ସ୍ୱପ୍ନ ଖାଲି ଚଉଦିଗେ, ଇନ୍ଦ୍ରଧନୁ ରଂଗ ସମାରୋହ;
ଗର୍ଭର ପ୍ରଶାନ୍ତି ଖାଲି, ଆଖି ଆଗେ ଅନନ୍ତ ଭବିଷ୍ୟ
ମୋ ଆତ୍ମାରେ ବିଶ୍ଳେଷି ମୁଁ ଜାଣିଲି ଏ ଶୈଶବ ସମ୍ମୋହ ।

ଇଏକି କଂପନ ଜାଗେ, ଥରିଉଠେ ପ୍ରତିଲୋମ କୂପ
ମୁଁ ଚୁହିଁଲି ସମ୍ମୁଖରେ ବାର୍ଦ୍ଧକ୍ୟର ଆକାର ନୀରସ,
ତନୁର ତନିମା ସରେ, ମରିଯାଏ ଉଦ୍ଦୀପିତ ଆଶା
ଭୟରେ ମୁଦିଲି ଆଖି, ହାୟ ଏ କି ଶୀତଳ ପରଶ ।

୧୬ । ୧୨ ୬୧

## ହସିବ କି ?

ବନେ ହସିବାକୁ ଉତ୍କଣ୍ଠିତ ହୋଇ ମୁଁ ଗଲି
ମୋ କକ୍ଷରେ ସଜ୍ଜିତ ଏକ ପୁଷ୍ପଗୁଚ୍ଛ ପାଖକୁ ।
ମୁଁ ତାକୁ କହିଲି—
"କେତେ ଆଗ୍ରହରେ ସୁବାସିତ ଜଳ ସିଂଚି
ତୁମକୁ ସାଇତିଛି,
ତୁମେ ଟିକେ ହସ, ଆଉ ମତେ ବି ହସିବାକୁ ଦିଅ ।"
ସେ କହିଲା—"ମୋର ଛିନ୍ନ ବୃନ୍ତକୁ ତୁମେ ଯଦି ଯୋଗ କରି ପାରନ୍ତ
ମୁଁ ଉଦ୍ୟାନ କୋଳରେ ପ୍ରାଣଭରି ହସନ୍ତି ।"

ଭଗ୍ନ ମନରେ ମୋ ପିଞ୍ଜରାର ଶାରୀ ନିକଟରେ ପହଞ୍ଚିଲି,
"ଆଦରର ଶ୍ରେଷ୍ଠ ଉପହାର ଦେଇ ମୁଁ ତୁମକୁ ପାଳିଛି,
ତୁମ ଅଧରରେ ହାସ୍ୟ ଖେଳାଇ ମୋ ପ୍ରାଣରେ ଶାନ୍ତି ଦିଅ ।"
"ମତେ ଯଦି ମୁକ୍ତ ଦିଅନ୍ତ, ତାହେଲେ
ମୁଁ ଏ ନୀଳଆକାଶରେ ଖୁବ୍ ହସନ୍ତି"
ମୁଁ କିନ୍ତୁ ପାରିଲିନି ।

ତାପରେ ଅଶେଷ ଆଶାରେ ମୁଁ ଭେଟିଲି
ଏକ ଲାବଣ୍ୟମୟୀ ନବ ଯୌବନାକୁ ।
ମୁଁ ତାକୁ ଆକୁଳ ଅନୁରୋଧ କଲି--
"ଥରେ ମାତ୍ର ହସିଦିଅ ରୂପସୀ,
ମୁଁ ବି ତୁମ ସାଥିରେ ହସିବି"
ସେ ଗମ୍ଭୀର ହୋଇ କହିଲା—
"ଏ ସମାଜର କଠୋର ମିଥ୍ୟା-ନିୟମ-କାରାଗାରରେ
ହସର ମୃତ୍ୟୁ ହୋଇଛି କବି,
ତୁମେ ତାହାହିଁ ଦେଖି ହସ—ମୁଁ ପାରିବିନି ।"

୧୯ । ୧୨ । ୭୧

## ପତଙ୍ଗର ଅପଥ ଗତି

ପଥ ଖୋଜା ବ୍ୟସ୍ତତାରେ କ୍ଳାନ୍ତମୟ, ସ୍ୱେଦସିକ୍ତ ତନୁ
ଦୁଇ ପାର୍ଶ୍ୱେ ଅନ୍ଧକାର, ପଶ୍ଚାତରେ ପ୍ରେତାୟିତ ମାୟା
ସାମ୍ନାରେ କେବଳ ଏକ କ୍ଷୀଣଧାର ଆଲୋକ ସଂକେତ
ରାସ୍ତା ଏକ ଦେଖାଯାଏ, ସେ ହେତୁରୁ ଗତି ବାଞ୍ଛାମୟ ।

ସେ ଆଲୋକ ହେଉ ବରଂ ଅନଳର ଦୀପ୍ତିମାନ ଶିଖା
ଅବା ହେଉ ରତ୍ନ ଜ୍ୟୋତି, ସୁନ୍ଦରର ବର୍ଣ୍ଣ ଉଜ୍ଜ୍ୱଳତା
ସେ ପଥରେ ଯିବା ସତ୍ୟ, ନିଶ୍ଚିନ୍ତ ଏ ଜୀବନ ସଂକଟେ
କ୍ଷୋଭ ନାହିଁ, ନାହିଁ ଅଶ୍ରୁ, ଅନୁତାପ ବହ୍ନିଜ୍ୱାଳା ନାହିଁ ।

ସେ ଆଲୋକ ଯଦି ହୁଏ ମୂଲ୍ୟବାନ ରତ୍ନର ବିଭାସ
ତେବେ ତ ଏ ଯାତ୍ରା ହେବ ସୌରଭର ଫୁଲବନ ମୋର
ଯଦିବା ସେ ହୋଇଥାଏ ଅଗ୍ନିକଣା, ବିସ୍ଫୋରଣ ଉତ୍ସ
କୃଶ ଅଂଗ ଜଳିଯିବ ପାଂଶୁ ହେବ—ଉଦ୍ଦାମ କାମନା ।

ସୁନିଶ୍ଚିତ ଉଜ୍ଜ୍ୱଳତା, ପଥପ୍ରାନ୍ତେ ଧୂସର କୁହୁଡ଼ି
ମୋ ପତଙ୍ଗ ଡେଣା ଥରେ—ଏଇମାତ୍ର ଯିବ ସିଏ ଉଡ଼ି ।

୨୫ । ୩।୭୨

## ମୋ କବିତା

ତୁମ୍ଭେ ମୋ ଅଶ୍ରୁର ଫୁଲ, ତୁମ୍ଭେ ମୋର ହସର ପସରା,
ତୁମ୍ଭେ ମୋ ଆଶାର ଉତ୍ସ, ତୁମ୍ଭେ ମୋର ସୋହାଗ ଅସରା,
ତୋ ଲାଗି ମୋ ଜୀବନରେ ଭରିଗଲା ଯେତେକ ବେଦନା
ସବୁରେ ବାହ୍ମୃତା ହେଲ — ତୁମ୍ଭେ ମୋର ପ୍ରାଣ-ସମ୍ବୋଧନା ।

ମୋ ଜୀବନ-ଆସରରୁ ତୁଟିଗଲା ଯେତେକ ବିଶ୍ୱାସ,
ସବୁରେ ତୁ ଯୁକ୍ତ କଲୁ ମନେ ଦେଇ ଅମିତ ଆଶ୍ୱାସ ।
ଯେତେ ଦୁଃଖ, ଯେତେ କ୍ଷୋଭ, ଯେତେ କୋହ, ଯେତେକ ଭାବନା
ସମସ୍ତ ନିଭାଇ ଦେଇ ତୁ କରିଲୁ ପୀରତ୍ତ ସର୍ଜନା ।

ତୁମ୍ଭେ ମୋ ସୃଷ୍ଟିର ଗର୍ବ, ତୁମ୍ଭେ ମୋର ସନ୍ତାନ ପରମ
ତୁମ୍ଭେ ପ୍ରିୟ ବନ୍ଧୁ, ମମ ଅନ୍ତରର ଶ୍ରେଷ୍ଠ, ଅନୁପମ,
ତୋ ଲାଗି ମୁଁ ତ୍ୟାଗ କଲି ଜୀବନର ସକଳ କାମନା,
ତୁମ୍ଭେ ମୋର ଚିର କାମ୍ୟ, ତୁମ୍ଭେ ମୋର ପ୍ରଣବ ଅର୍ଚ୍ଚନା ।

୧୭ । ୭ । ୭୧

## ଜୀବନ

ଘୋର୍‌ ତମିର ତଳେ, ସୁଶୁପ୍ତିର ଉତ୍ତରଳ କୋଳେ
ମୁଁ ଥିଲି ଚେତନାହୀନ, ନିର୍ବିକାର୍ ପୁଷ୍ପବାସ ଭୋଳେ;
ପଥପ୍ରାନ୍ତେ ଜାଳି ଜାଳି ଚନ୍ଦ୍ରୋଦୟା ଉଜ୍ଜ୍ୱଳ ଆଲୋକ
ସିଏ ଆସି ପହଞ୍ଚିଲା; ଚହଲାଇ ଦ୍ୟୁଲୋକ, ଭୂଲୋକ ।

ମୁଁ ଖୋଲିଲି ଆଖିପତା, ଉତ୍ସବର ବନ୍ୟା ଶେଷହୀନ,
ମାଳ ଢେଉ ମଥାପିଟେ, ଅନାଗତ ସଂକେତ ବିହୀନ,
ସେ ଆଲୋକ ଚୁପ୍ ଚୁପ୍ ମୋ କାନରେ କହିଲା ଅଧୀରେ
"ହସି ଦେଲୋ ପୁଷ୍ପବନ୍ତ, ନିଭାଇ ଦେ ବକ୍ଷର ରୁଧୀରେ ।"

ସରୁ ସରୁ ଓଷ୍ଠଧାର ପ୍ରସାରିଲି ଅଳପେ, ଅଳପେ,
ବିମୁଗ୍‌ଧ ସୋହାଗ ନେଇ ସେଦିନର ସେ ମଧୁ ତଳପେ
ସହସା ଏ କ ପ୍ରଳୟ, ବିସ୍ଫୋରଣ ଆକାଶର ମୁଖେ
ଆଲୋକ ଘୁଞ୍ଚିଲା ହାୟ; ସବିସ୍ମୟ ଆତଙ୍କ ଏ ବୁକେ ।

ମୋ ଦେହ କଂପିତ ଅଙ୍ଗ, କଣ୍ଠ ମୋର ନୀରବ, ବରାମ,
ଭାବିଲି ସେ ହାସ୍ୟ ଛଳେ ଦେଲା କଂପା ବେଦନା ଚରମ ?
ସେ ଆଲୋକ କହିଗଲା ଯାହା ସତେ ଅବିସ୍ମରଣୀୟ
"ଜୀବନରେ ଖାଲି କଣ ସଜମରେ ହରଷ ହିଁ କାମ୍ୟ ?"

୩୦ । ୧ । ୬୨

## କବିତା ପ୍ରବାହ

"ଖାଲି ଚିନ୍ତା କରିଲେ ଧନରତ୍ନ
କଣ ବିଜ୍ଞାନ ପାଠ ପଢ଼ାହୁଏ,
କେବେ ପଢ଼ାବହି ଧରି ବସିଲୁନି
ଆଉ କାହିଁ ପାଇଁ ତତେ ଏତେ କୁହେ ?"

ଏଇ ବିଜ୍ଞାନରେ କି ଜୀବନଟା
ଭରି ଆସେ ନାହିଁ ଠିକେ ଅବସାଦ,
ଫୁଲ ଶୋଭାରେ ନିମିଷେ ଭୁଲିଗଲେ
କଣ ସବୁଠୁଁ ବଳଇ ଅପରାଧ ?

ଜଡ଼ ଜଗତ ସହିତ ଆତ୍ମାରେ
ଯଦି ଗୁନ୍ଥିଲେ ମିଳେ ଗଉରବ;
ତେବେ କେଉଁ ଲାଭ ଲାଗି ପୃଷ୍ଠରେ
କହ ଭରିଅଛୁ ଏତେ ସଉରଭ ?

ଜଡ଼ ବୃକ୍ଷେ କି ବେଦନା ମରମର
କେବେ ବ୍ୟଥାର କରେନି ଉପଶମ,
ଯେବେ ଅଶ୍ରୁ ଝରଇ ଉପବନେ
ତେବେ ଥର ଯାଏ ଫୁଲ ଅପଘନ ।

ସଜ ସକାଳ ଶୋଭରେ ଆଖିରଖି
ଯଦି ନିଭିଲ ମନରୁ ନିଆଁ ଦାଗ;
ପ୍ରୀତି ଉଚ୍ଛଳ ହେଲା ବୁକୁତଳ
ଯଦି ଛୁଟିଲ ଓଠରେ ଅନୁରାଗ···

ତେବେ ତା ଲଗି ଚନ୍ଦ୍ର ବେଳଗଲେ
ଲେଖି ତାହାର ସଂଜ୍ଞା କଲମରେ
ଯିଏ ବତାଏ କ୍ଷଣେ ତା ନିୟମକୁ
ସେ କି କାର୍ଯ୍ୟରେ ତାର ହେଳା କରେ ?

ମୋର କଲମ ଗୁଡ଼ିବା ନୁହେଁ ସତ
ତେଣୁ ଲକ୍ଷ ଆଘାତ ସହିଯାଏ;
ଏକ ସାହାରା ମରୁର ଝରସମ
ମୋର କବିତା ପ୍ରବାହ ବହିଯାଏ ।

୩ । ୧ । ୭୨

## ଦୀପାବଳୀ

ଏ ଦୀବାଳୀ କାଟିନ କହେ କେଉଁ ଦୂର ଅତୀତ କାହାଣୀ
ମନତଳେ ବୁଣିଯାଏ ବ୍ୟଥା ଭରା ଲୁହ ଭଜା ବାଣୀ;
ଅଙ୍ଗେ ଅଙ୍ଗେ ଶିହରଣ, ଓଷ୍ଠୁଧାରୁ ଭାଷା ନିଏ ଲୁଟି,
ଚକ୍ଷୁ ରହେ ଅପଲକ; ସ୍ୱପ୍ନମୟ ଆଶା ଯାଏ ତୁଟି ।

ଆଜିଏ ମଧୁର ଲଗ୍ନେ ଦୀପାବଳୀ ଆସିଥାନ୍ତା ଯିନା,
ହାତେ ଧରି ପୁଷ୍ପମଧୁ, ପ୍ରୀତିଦାନ, ସ୍ୱଚ୍ଛନ୍ଦିତ ବୀଣା;
ତେବେ ତାର ଆଗମନି ଲୋଡ଼ିଥାନ୍ତା ଉଚିତ ବନ୍ଦନା ।
କଣ୍ଠେ ଗାଇ ପ୍ରେମଗୀତ କରିଥାନ୍ତି ତାର ଅରଚନା ।

ସେ କିନ୍ତୁ ଆସିଲା କମ୍ପା ବେଦନାର ନଦୀ ଉଚ୍ଛୁଳାଇ,
ଦୀର୍ଘଶ୍ୱାସ ଖାଲିପିନା ଉଠିଲା ଏ ବୁକୁରେ ଥରାଇ,
ଚମକି ଗୃହିଁଲି ଯେବେ କିଛି ନାହିଁ, ତମିର ଉତ୍ତରୀ;
ସବୁତ ଭୈରବ ସତ ଦୀପାବଳୀ ଆସିବନି ଫେରି ।

ଦୀପାବଳୀ କାନ୍ଦେ ଆଜି, ମୋ ଆଖିରେ ଅଜସ୍ର ଲୋତକ
ଟିକିଏ ସାନ୍ତ୍ୱନା ନାହିଁ, ପ୍ରାଣତଳେ ଧୂସର ପୁଲକ ।

ତା । ୨୭ । ୧୧ । ୭୧

## ପଥ ସଂକେତ

ସେଦିନ ଆସିଲା ସନ୍ଧ୍ୟା ଫୁଲ ବନେ, ରାଜଭବନରେ
ସହରର ଉପକଣ୍ଠେ ଜମିଥିଲା ଜ୍ୟୋତ୍ସ୍ନାର ଲହଡ଼ି;
ଲୋଟିଥିଲା ଶ୍ୟାମ ଉପବନ,
ଖେଳୁଥିଲା ଗୋଲାପର ଓଠୁ ଓଷ୍ଠେ ଶ୍ରାବଣ ପବନ ।

ଆଖିରେ ବସନ୍ତର ଢେର ପ୍ରଶ୍ନଭରା ଅସ୍ପଷ୍ଟ ବାଦଲ,
ମନରେ ପୁଲକ ବନ୍ୟା, ଉଚ୍ଛ୍ୱସିତ କୂଳ ଲଙ୍ଘି ଯାଏ;
ସେ କାଳେ ମୁଁ ନିରେଖିଲି ତାରେ
ତା' କଣ୍ଠେ ଆବେଗ ଅତି, ଚନ୍ଦ୍ରାଲୋକର ବସନ୍ତ ସୀମାରେ ।

ଚକ୍ଷୁରେ ଆଗାମୀ ସ୍ୱପ୍ନ, ପ୍ରାଣତଳେ ପ୍ରୀତି ନିମନ୍ତ୍ରଣ,
ହସ୍ତରେ ତା ଝରାଫୁଲ, ଅନ୍ତରେ ତା ଉତ୍ସବ ଅଶେଷ,
ମୁଁ ଧୀରେ ପ୍ରସାରିଲି କର,
ତୋଳି ଦେଲା ଉପହାର ହସୁଥିଲା ମେଘର ପ୍ରହର ।

ହଠାତ୍ ଚହ୍ଲିଲି ତାରେ ଜନହୀନ, ଆରଣ୍ୟକ ଦ୍ୱୀପ,
ମୁଁ ଓ ଏକ ପାଲଟଣା ଜାହାଜର ନିର୍ଜନ ଚାଳକ,
ଲକ୍ଷ୍ୟ ମୋର ସୁଦୂର ଦିଗନ୍ତ,
ଧର୍ମ ମୋର ନିରପେକ୍ଷ, ଯାତ୍ରା ମୋର ଅସୀମ ଅନନ୍ତ ।

ଫିଙ୍ଗିଦେଲି ଉପହାର ସାଗରର ଅଚଂଚଳ ସ୍ରୋତେ
ଅବିଳମ୍ବେ ଚଳାଇଲି ଜାହାଜ ମୋ ଅବିଶ୍ରାନ୍ତ ପଥେ,
ଚତୁର୍ଦ୍ଦିଗେ ବହଳ ଅନ୍ଧାର,
ଶ୍ରବଣେ ତୋଳିଲା ଢେଉ, ସେଇ ତାର କ୍ରନ୍ଦନର ସ୍ୱର ।

ତା ୨୭ । ୨ । ୭୨

## ଛିନ୍ନପକ୍ଷ

ପ୍ରଳୟ ଝଙ୍କାରେ ଖେଳ ଅସମାପ୍ତ ଝଡ଼ର ଲଗନେ
ଉଡ଼ୁଥିଲ ସଙ୍ଗହୀନ ପକ୍ଷିଣୀଟି ପ୍ରକମ୍ପିତ ମନେ;
କ୍ଷୁଦ୍ର ତା ତନୁର ତଳେ ଘୂର୍ଣ୍ଣିବାୟୁ ଆସଜ୍ଞାନ ଲୀଳା,
ଅନ୍ତରେ ଆଶଙ୍କା ମିଶା, କ୍ଷୟଶକ୍ତ କ୍ଳାନ୍ତର ପ୍ରଶିଗ ।

ଅନ୍ଧାରର ଆର୍ତ୍ତନାଦ, ସିନ୍ଧୁବକ୍ଷେ ଉତ୍ତାଳ ତରଙ୍ଗ,
ଝାଉଁବଣେ ଝନତ୍କାର ଆଖିଆଗେ ଭ୍ରାନ୍ତିମୟ ରଙ୍ଗ,
ଅବସନ୍ନ ଡେଣା ପିଟି ଖୋଜିବୁଲେ ସଙ୍ଗର ଆଶ୍ରୟ,
ମନରେ ଜମିବ ଜ୍ୟୋତ୍ସ୍ନା, ଦୂରେ ଯିବ ପ୍ରେତାୟିତ ଭୟ ।

ବିଦ୍ୟୁତ ଝଲକେ ସିଏ ଦେଖିନେଲା ଜୀର୍ଣ୍ଣ କୋଠରରେ
ସୁନ୍ଦର ପକ୍ଷୀର ବାସ, ଗଲା ତହିଁ ଅନୁରାଗ ଭରେ;
ଗୃହୀଁଲାନି ନିମନ୍ତ୍ରଣ, ପଚାରିଲା ବିଶେଷ ବ୍ୟସ୍ତରେ,
ଆଶ୍ରୟ ପାଇବ କି ନା ଫେରିଯିବ ଅନ୍ଧକାର କୋଳେ ।

ପକ୍ଷୀଟି ସମ୍ମତି ଦେଲା, ପ୍ରୀତି ଦେବ ପ୍ରାଣପାତ କରି,
ଆପଣାର ମଧୁପ୍ରାଣ ସାରିଦେବ ସରାଗ ବିତରି;
ପାରିବନି ଉଡ଼ି କିନ୍ତୁ ସନ୍ନିଧିରେ ପକ୍ଷନାହିଁ ହାୟ
ବିଷମ ବିଭ୍ରାଟ ଏଠି ପକ୍ଷିଣୀଟି ମାଗୁଛି ବିଦାୟ ।

କାହାକୁ ବିଦାୟ ଦେବା ଅସମ୍ଭବ ପକ୍ଷୀର ଜୀବନେ
କେହିତ ଆସିନି କେବେ ଛିନ୍ନପକ୍ଷ ଅଶ୍ରୁର ମୁଅନେ
ହସ୍ତା ଏକ ଯଦି ଥରେ ଆସିଥିଲା ଅସମୟେ ଭୁଲି
ପାରିବନି ତେଜି ସିଏ ଗର୍ବରେ ତା ବୁକୁ ଉଠେ ଫୁଲି ।

ଯଦିବା ଆସିଲା ଆଜି ଧ୍ୱଂସର ଏ ଦୁନ୍ଦୁଭି ଲହରେ
ନ ଯାଉ ସେ ବକ୍ଷେ ଥାପି ଅଗ୍ନିଦାଗ, ନିଃସଙ୍ଗ ପ୍ରହରେ;
ପକ୍ଷିଣୀ ଶୁଣିଲା ନାହିଁ, ନୟନ ତା ଅଶ୍ରୁ ଛଳ ଛଳ
ଉଡ଼ିଗଲା ଧୀରେ ଧୀରେ ଖୋଜି ଏକ ସଫଳ ଆସର ।

ତା ୭ । ୩ । ୭୨

## ନୟନ ଜ୍ୟୋତି

ଯେତେ ଲୁହ ଦେଲ, ଦୁର୍ଦ୍ଦଶା ଦେଲ ଜୀବନେ ଭରି
ଆଶିଷ ବୋଲି
ସକଳେ ନେଲି ମୋ ବକ୍ଷେ ତୋଳି ।

କାମନା ସଉଧ ରଚିବାକୁ କେବେ ଲୋଡ଼ିନି ମନ
ଜୀବନ ଲାଗି,
ଧନ, ସମ୍ମାନ, ଗୌରବ କିଛି ନାହିଁ ମୁଁ ମାଗି ।

ପଥ ଭ୍ରାନ୍ତେ ମୁଁ ବିସ୍ମୃତ ହେଲେ ସଜାଡ଼ି ନିଜେ
କରିଛି ଖାଲି,
ତୁମ ଇଙ୍ଗିତ, ତୁମ କାମନାରେ ଅର୍ଘ୍ୟ ଢାଳି ।

ଅନ୍ଧାର ଆଜି ଜୀବନେ ମୋ ଯଦି ଆସୁଛି ଘେରି
ସୁସ୍ଥ ମନେ,
ଡାକୁଛି ମୁଁ ଆସ ଦେବତା ଏଇ ମୋ କୁଂଜବନେ ।

କିଛି ମୁଁ ମାଗୁନି ଦେଖା ବାରେ ତବ ନୟନ ଜ୍ୟୋତି,
ଏତିକି ମମ
ଜୀବନେ କରିବ ଉଜ୍ଜ୍ୱଳ ଆଉ ଶ୍ରେଷ୍ଠତମ ।

୨୦ । ୧୦ । ୬୧

## ପ୍ରୀତିତର୍ପଣ

ତତେ "ପ୍ରାଣର ବନ୍ଧୁ" କହିଲେ
ମୋର ସ୍ନେହର ନହେବ କଳନା,
ମୁଁ ଯେ ଶ୍ୟାମଳ ଧରଣୀ; ବୁକେ ତୁ
ଢାଳୁ ଅବିରତ ପ୍ରୀତି ଜୋଛନା ।
ତୁଲେ କୋଟିଏ ମେଳରେ ଗୋଟିଏ
ତତେ ପାଇଥିଲି ଅନାହୂତରେ
ଆଜି ଦୂରକୁ ଯାଉଚୁ ବନ୍ଧୁ
ଗୁରୁ ବେଦନା ଦେଇ ମୋ ଚିତ୍ତରେ ।
ଅପୂର୍ବ ସିନ୍ଧୁ ଜେମା ତୁ ଚଳିଲୁ
ତେଜି ବରୁଣ ପୁରୀର ସଉଧ,
ତୋର ବିଚ୍ଛେଦେ ଧମ୍ମ ଦେଖ ଲୋ
ଲୋଟେ କାନ୍ଧି ଏ ଚଲା ବଉଦ ।
ଆଜି ଗୋଲାପ ଫୁଟିବ କା' ଲାଗି
ମଧୁ ଚଂପକ କଳି ଫୁଟିବ,
ସବୁ ଭୁଲି ସିନା ଆଜି ସଖିରେ
ଖାଲି ନୟନୁଁ ଅଶ୍ରୁ ଛୁଟିବ ।
ତୋର କବିତା କୁଂଜେ ଫୁଟୁଲେ
ଶତ ସୌରଭ ଭରା ଶେଫାଳି,
ତୁମ୍ବ ଉଜ୍ଜ୍ୱଳ କର ଜୀବନ
ଢାଳି ଶ୍ରଦ୍ଧା, ମମତା ଧାପାଳୀ ।
ତୁଉ ଭୁଲିଗଲେ ପଛେ ଭୁଲିବୁ
ମତେ ଅନ୍ତର କର ସୋହାଗୀ
ତୋର ପୀରତି ହସର ଚହ୍ଲ
ମୋର ମରମ ଭରିବ ସରାଗୀ ;
ଆଉ ସାକ୍ଷାତ ହେବା ଜୀବନେ
ଖାଲି ମିଛ ଆଶା ସିନା ବନ୍ଧୁ
ତେଣୁ ଅଶେଷ ଶରଧା, ସେନେହ
ଆଜି ଝରେ ମୋ ହୃଦୟୁ ଛନ୍ଦୁ ।
୪ । ୧୨ । ୬୧

## ସାଇତା ସ୍ମୃତି

ଗୁଡ଼ି ଆସିଲା ଯା ଚିରଦିନ ଲାଗି
ସ୍ନେହ ସମ୍ଭାର, ବନ୍ଧୁ ସୋଦର୍ଶ ଯେତେ,
ଅନାହୂତ ଭାବେ, ଅଯାଚିତ ଭାବେ କାହିଁ
ସବୁକଥା ଆଜ ସ୍ମୃତିରେ ଆସୁଚି ଏତେ ।

ସେଦିନର ସେଇ ପୁଷ୍ପ ସୁବାସ ଝରି
ଆମୋଦିତ କରେ ଅନ୍ତର ତଳ ଆଜ;
କାହିଁ କେଉଁଦିନୁ ଅଶିତ ଥିଲାଟି ଶୋଇ
ଜାଗ୍ରତ ଆଜ ନିଶିଥ ତନ୍ଦ୍ରା ଭାଜ ।

ସେଦିନରେ ଝୁରି ଏ ଦିନ ଆର୍ଦ୍ର ହୁଏ
ସେଇ ଗାନ ଏଇ ମରମ ବୀଣାରେ ଛୁଏଁ;
ସେ କୋକିଳ ଗାଏ ଏଇ ଚୂତଡାଳେ ବସି
ସେଦିନ-ଜ୍ୟୋତ୍ସ୍ନା ଆଜ ଏ ଧରଣୀ ଧୁଏ ।

ସେ ଆଲୋକ ଧାର ଏ ଭୂମିରେ କରେ ଦୂର
ସେ ଦିନର ହସ ଆଜ ଏ ଲୁହରେ ଭରେ;
ମଧୁ ମୂର୍ଚ୍ଛିତ ସେଇ ମୁହୂର୍ତ୍ତ ଲାଗି
ଏ ଜୀବନ ସାରା ଅନୁଚିନ୍ତାରେ ଥରେ ।

୧୬ । ୧୧ । ୬୧

## ଘୂର୍ଣ୍ଣନ

ମୋ ଆକାଶ ସୂର୍ଯ୍ୟ ହାୟ ଅସ୍ତଯାଏ
ଦେଖ ମୋର ଆଲୋକର ଇଚ୍ଛା
ମୁଁ ପୃଥିବୀ ଘୂରିଯାଏ ଅକ୍ଷ ପ୍ରଦେଶେ
କାରଣ ଏ ଘୂର୍ଣ୍ଣନ ମୋ ମିତ ।
ସୂର୍ଯ୍ୟ ତେଣୁ ଲୁଚିଯାଏ, ଆହା, କେବେ
ପାରେନା ମୁଁ ରକ୍ଷାକରି ତାରେ
ଆଖିର ଅଜସ୍ର ଲୁହ, ବୁକୁ ଭଙ୍ଗେ
ଅସରଣୀ ବେଦନାର ଭରେ ।
ହାୟ ! ସେ ବିଦାୟ ମାଗେ କାରୁଣ୍ୟର
ଘନ ଘୋର ଅନ୍ଧକାରେ ବୁଡ଼ି,
ଉଦ୍ଧାର ପାରୁନି କରି, ପାରୁନି ମୁଁ
ପୋଛି ଥରେ ତା' ମନ କୁହୁଡ଼ି ।
ଦେଖ ଦେଖ ସ୍ୱପ୍ନ ମୋର ଲିଭିଯାଏ
ସମ୍ମୁଖରେ ନିଷ୍ଠୁର ସତ୍ୟତା,
ଯାଏ ଗର୍ବ ମୋର, ଚୂର୍ଣ୍ଣ ହୁଏ
ମୋ ଆତ୍ମାର ବ୍ୟାକୁଳିତ ସତ୍ତା ।
ଶୁଖିଯାଏ ସ୍ରୋତ ମୋର, ମରିଯାଏ
ଆକାଂକ୍ଷାର ରଙ୍ଗିନ ବହ୍ନିମା,
ଆହା ! ସତେ ଭାସିଯାଏ ରକ୍ତରେ ମୋ
ସିନ୍ଦୂରିତ ଅକ୍ଷାଂଶ, ଦ୍ରାଘିମା ।
ମୁଁ ଘୂରୁଚି, ଦେଖ କେଣେ ଛପି ରହେ
ସୂର୍ଯ୍ୟ ମୋର ଅଭିମାନେ ଝୁରି,
ମୋ ଅନ୍ତରେ ନିଆଁ ଲାଗେ, ଧୂଆଁ ଉଠେ,
ବ୍ୟସ୍ତତାରେ କୁହୁଳି କୁହୁଳି ।
ଏଇ ଦେଖ ସୂର୍ଯ୍ୟ ମୋର ଅସ୍ତଯାଏ
ଘେରିଆସେ ହତାଶ କାଳିମା,
ପୃଥିବୀ ଘୂରେ ମୁଁ ହାୟ, ପାରେନାହିଁ
ରକ୍ଷାକରି ମୋ ବୃତ୍ତର ସୀମା ।

୧ । ୩ । ୭୨

# ଭିକ୍ଷୁକ

ଭିକ୍ଷୁକ ସେ ଗୋ ଚକ୍ଷୁରେ ତାର ଲକ୍ଷ ଯୁଗର ଆଶା
କଳ୍ପନା ତାର କଳ୍ପ ଉଦ୍ୟାନ କରଣ୍ଡ ଅସର ଭାଷା;
ନିଃସ୍ୱ ସେ ବୁଲେ ସାରା ବିଶ୍ୱର ସମ୍ମୁଖେ ହାତ ପାତି
କେହିତ ବେଦନା ବନ୍ଧୁଏ ହେଲେ ସ୍ନିଗ୍ଧ ମମତା ଗୁନ୍ତି ।

କିନ୍ତୁ ସେ ଦିନେ ଅନ୍ତର ତଳେ ଅଶେଷ କ୍ଲାନ୍ତ ଭରି
ଆସିଲା ମୋ ପାଶେ ରିକ୍ତ ପରାଣ ଲୋତକ ସିକ୍ତ କରି;
କି ଦେଇ ମୁଁ ଅବା ପୂର୍ଣ୍ଣ କରିବି ଶୀର୍ଣ୍ଣ ତାହାର ବୁକୁ
ପୀୟୂଷ ପିଆଇ ଆଶ୍ୱାସ ଦେବି ହାସ୍ୟ ଢାଳି ମୋ ମୁଖୁଁ ।

ସୌରଭ ଯେତେ ଅଂଜଳି ଭରି ଦେବି ମୋ କୁଂଜବନୁ
ମଧୁ ମୂର୍ଚ୍ଛନା କରଣ୍ଡ ମୋ ଟୋକି ଧୋଇବି କ୍ଲାନ୍ତ ତନୁ;
ଯାହା କିଛି ମୋର ରୂପ ଗୌରବ ସକଳ [illegible] ରେ
ଯେତେକ ସଂପଦ ସଂଚି ରଖିଚି ଅର୍ପିବି ହରଷରେ ।

ସଭିଏଁ ଗୋ ପଛେ କହୁଥାଅ ମତେ "ତରୁଣୀ [illegible]"
ମାତ୍ର ମୁଁ ତାର ପାଦେ ଭରିବି ଅଶ୍ରୁଳ ଅର୍ଚ୍ଚନା;
କେହି ଜାଣ କେବେ ପଥ ପ୍ରାନ୍ତର ଭିକ୍ଷୁକ ମନତଳେ
କି ବାସନା ଜାଗେ, କେଉଁ ସ୍ମୃତିରେ ଅନ୍ତର ତାର ଥରେ ।

୭ । ୧୦ । ୭୧

## ଅନ୍ଧାର ଜଳା

ଅନ୍ଧାରୁ ଜନମି ସେ ଯେ ଜାଳୁଥାଏ ଆଲୋକ ବର୍ତ୍ତିକା
ଶୋଷକରେ ଅସୁମାର ଲୁହ ଲହୁ ହସର ଭୂମିକା;
ଥର ଥର ଶିଖାଜଳେ ତା ପରିଧି ଉଜ୍ଜ୍ୱଳତା ଭରି
କେବେ ବା ଝଂଜା ଘାତରେ ସସଂଭ୍ରମେ ଉଠୁଥାଏ ଥରି ।

କ୍ଷଣମାତ୍ର ସ୍ଥିତି ତାର, ଶୋଷିନିଏ ସହସ୍ର ସୌରଭ,
କେତେ ପ୍ରାଣ ଆବେଗର, କେତେ ତନୁ ଶୋଭାର ସୌଷ୍ଠବ;
ପ୍ରୀତିମୟ ମମତାର ସିଏ ଏକ ଜ୍ୱଳନ୍ତ ପ୍ରତୀକ,
ଜଳୁଥାଏ ଅହରହ ଜୀବନର ଶୁଭ୍ର କଉଶିକ ।

ତାହାର ସଂଚୟ ସରେ, ଦ’ଦିନର ଅଭୁଲ କାହାଣୀ
ଇତ[illegible]ସ ସରିଯାଏ ମଥା ପୋତେ ଭବିଷ୍ୟ ସନ୍ଧାନୀ
[illegible] ନିର୍ମାଣେ, ଯେତେ ତାର ସ୍ୱଭାବ ନିକାଶ
[illegible]ପ୍ତିରେ ଦପଦପ ନିଷ୍ପ୍ରଭତା ଅନନ୍ତ ବିକାଶ ।

ତା’ପରେ ଘନୀଭୂତ ଅନ୍ଧକାର ଅସ୍ପଷ୍ଟ ଆବେଶ
ଜୀବନର ଶିଖା ନିଭେ ଚଉଦିଗେ ତମିର ଅଶେଷ ।

୨୨ । ୨ । ୭୨

# ଅନ୍ଧାର

ଜୀବନର ଯୁକ୍ତ ତଳେ ବୃଥା ତୁମ ଆକୁଳ ଆହ୍ୱାନ
ବଧିର ମୋ କର୍ଣ୍ଣ ଦୁଇ, ବିବର୍ଣ୍ଣ ମୋ ଆଶାର କଳିକା,
ସମ୍ମୁଖରେ ନଭଶ୍ଚୁମ୍ବୀ ପ୍ରାଚୀରର ଗର୍ବୋନ୍ନତ ଶିର
ଗୌରବର ତୁଙ୍ଗ ଶିଖେ ତୁମର ଯା' ତୁଚ୍ଛ ଅହମିକା ।

ସୁବର୍ଣ୍ଣର ସୌଧ ରଚ ତୁମର ଏ ସ୍ୱପ୍ନ ଅଘଟଣ,
ଅଜସ୍ର ସୌରଭ ଯୁଅ, ତୁମ ରାଜ୍ୟେ ଆଲୋକ ସଂଚୟ,
ଆସନ୍ନ ପ୍ରଭାତ ତେଜ, ଉତ୍ସବର ପ୍ରାଣବନ୍ତ ବନ୍ୟା
ତେଣୁ ତୁମେ ଡାକ "ବନ୍ଧୁ, ଭୁଲି ଆସ ସକଳ ସଂଶୟ ।"

ମୋ ପଥ ହଜିଛି ଏଠି ଅଗ୍ନାଅଗ୍ନି ବନସ୍ତ ଭିତରେ
ଅନ୍ଧାରର ଆସ୍ତରଣ ଲିଭାଇଛି ଆଖିର କଜ୍ଜଳ;
ଅପର୍ଯ୍ୟସ୍ତ ସବୁକିଛୁ ଖୋଜିବାର ଅସ୍ପୃହା [illegible]
ବୃଥା ତୁମ ନିମନ୍ତ୍ରଣ, ଆବେଗର ସ୍ନେହ[illegible]

ତୁମେ ଯେ ଡାକୁଛ ଅତି ଅଭୀପ୍ସା
ଫୁଲର ତଳପତଳେ, ଫଗୁଣର ବର୍ଣ୍ଣିଳ ବାସରେ
ଏଠି ମୁଁ ଯେ ଅନ୍ଧହୋଇ ଲୋତକର ସାଗର ସରଜେ
ତୁମେ କି ଧାରନା ଜାଣି ତୁମର ସେ ବସନ୍ତ ବାସରେ ।

ହତାହତ ପାଦ ମୋର, ଗ୍ଲାନିଭରେ ଅଜସ୍ର ଆୟାସ
ତଥାପି ବି ବୁକୁତଳେ ଧାଇଁବାର ପ୍ରବଳ ପ୍ରୟାସ ।

୨୨ । ୪ । ୭୨

## ଶେଷ ଜହ୍ନ

ଧରା ଅଙ୍ଗନେ ରଙ୍ଗୀନ ଆଭା ଖେଳାଇ
ମୃଦୁ ମଞ୍ଜୁଳେ ପଦ୍ମକୋରକ ଦୋଳାଇ
କୁମାରୀ ବକ୍ଷେ ଲକ୍ଷ ସପନ ସରଜି
ପୂର୍ଣ୍ଣିମୀ ଆସେ ନୂତନ ଛନ୍ଦ ବରଚି ।

କଅଁଳ ବୁକୁରେ ବହଳ କାମନା ଝୁଲକେ
ରଜତ ଜୋଛନା ପରଶେ ଧରଣୀ ପୁଲକେ
ବରଷକେ ପୁଣି ପୁନିଅଁ ଆସିବ ଜୀବନେ
କଏ କାହିଁଥିବ କାହା ବଧୂ ସାଜି ସରମେ —

× × ×

କାହୁ କ ଲାଗି କାହାମନ ନୁହେଁ ସରସ,
ଚକ୍ଷୁରେ ଖାଲି ନୀରବ ଚେତନା ପରଶ,
ଏଇ ପୂର୍ଣ୍ଣିମା [illegible] ସାଥେ ଆଣିନି,
ସ୍ୱକଳ୍ପିତ [illegible] କରୁଣତା ଭରା ରାଗିଣୀ ।

ଦପଦପ [illegible] ଦ ନଷ୍ଟ କରିଛି ବନ୍ୟା,
[illegible] ଏ ଯେ ପ୍ରଳୟର ଶେଷକନ୍ୟା;
ମଡ଼କ, ଚଡ଼କ, ଶୋକ, ଦୁର୍ଦ୍ଦଶା ଯେତକ
ରସହୀନ କରି ଜୀବନେ ଦେଇଛି ଚମକ ।

ପୁଷ୍ପମାଳା କେ ସଜାଉନି ଆଜ ସରାଗେ,
ହୁଳହୁଳି ସୁଅ ଛୁଟୁନି ମୁଖରୁ ବରାଗେ,
ନୂତନ ବସନେ ଅଙ୍ଗ କେ ଆଜ ସାଜୁନି
ମଙ୍ଗଳ ତାନେ ଶୁଭର ଶଙ୍ଖ ବାଜୁନି ।

କାହିଁକି ସତେ ଏ ପୂର୍ଣ୍ଣିମୀ ଆଜ ଆସିଛି—
ନୟନ ଲୋତକେ ଅନ୍ତର ସିନା ଭାସିଛି ।

୨୬ । ୧୦ । ୬୧

